# ଅନନ୍ତ ପ୍ରେମର ଗୀତ

ହୃଦାନନ୍ଦ ପାଣିଗ୍ରାହୀ



ଅନଂତ ପ୍ରେମର ଗୀତ (୧୯୯୦)

(c) ହୃଦାନଂଦ ପାଣିଗ୍ରାହୀ

ପ୍ରକାଶକ : ମୟୂର ପବ୍ଲିକେସନ୍ସ୍, ଭୁବନେଶ୍ୱର

ପ୍ରଚ୍ଛଦ ଶିଳ୍ପୀ : ଶିବ ପାଣିଗ୍ରାହୀ

ମୁଦ୍ରକ : ବିଶ୍ୱବଂଶୀ ପ୍ରେସ, ୟୁନିଟ-୪, ଭୁବନେଶ୍ୱର

ମୂଲ୍ୟ : ପନ୍ଦର ଟଙ୍କା

**ANANTA PREMARA GEETA (1990)** (c) **Hrudananda Panigrahi** Publisher : Mayur Publications, C/5, Unit-3, Kharavela Nagar, Bhubaneswar-751001 Cover Design : **Siba Panigrahi,** Printer: **Biswabanshi Press,** Bhubaneswar-751001

Rupees **Fifteen only.**

# ନିଜ ମତରେ ନିଜର କବିତା

— ସୌରୀନ୍ଦ୍ର ବାରିକ

କବିତାର ଜନ୍ମ ଲଗ୍ନରେ ଆଲୋଚନା, ବିଶ୍ଳେଷଣ କିମ୍ବା ମୂଲ୍ୟାୟନ ନୁହେଁ, କେବଳ ସ୍ୱାଗତିକା, ଅଭିନନ୍ଦନ । ଏହି ଦୃଷ୍ଟିରୁ ମୋର ଏ ଲେଖାଟି ବିଚାର୍ଯ୍ୟ ।

ଶ୍ରୀମାନ ହୃଦାନଂଦ ମୋର ଛାତ୍ର । ମୋର ଜଣେ ତରୁଣ କବି ବଂଧୁ । ମୁଁ ତାଙ୍କର ଅଧିକାଂଶ କବିତାର ପାଠକ । ଏ ଲେଖା ଜଣେ ବିଦଗ୍ଧ ପାଠକର ପ୍ରତିକ୍ରିୟା ନୁହେଁ ବରଂ ନିଚ୍ଛକ୍ ଆନନ୍ଦ ପ୍ରକାଶ । ହାଉ ଜାଉ କବିତାର ଗହଳି ଭିତରେ ଆଉ ଗୋଟିଏ ସଂଖ୍ୟାର ଯୋଗ ନୁହେଁ, ସମ୍ଭାବନାର ସ୍ୱପ୍ନଟିଏ ଦେଖିବାର ଯେଉଁ ଆନନ୍ଦ, ସେହି ଆନନ୍ଦ । ହୃଦାନଂଦର କବିତା ପଢ଼ିଲେ କେମିତି ଭଲେ ଭଲେ ଲାଗେ । ଏପରି ଭଲେ ଲାଗିବାଟାକୁ କିନ୍ତୁ ବୁଝାଇବା ସହଜ ନୁହେଁ । ଏ ଭଲେ ଲାଗିବାଟା ନୂଆର ଶିହରଣ ନୁହେଁ, ବୁଦ୍ଧିର ଚମକ ନୁହେଁ, ଗଠନର କୁଶଳତା ନୁହେଁ । ଏହା ଯେମିତି ଅତି ଚିହ୍ନା ଚିହ୍ନା ଅନୁଭୂତିକୁ ନିଜ ଭାବରେ କହିଦେବା, ଆଉ ଥରେ ନୂଆ କରି ଦେଖାଇବା । ଆଉ ସବୁଠାରୁ ବଡ଼ ମଜାର କଥା ହେଉଛି ଏପରି କହିବା ବେଳେ, ଦେଖାଇ ଦେବା ବେଳେ କହିଦେଇଛି ଅବା ଦେଖାଇ ଦେଇଛି ବୋଲି ଆଦୌ ଜଣାଇ ନଦେବା । କୌଣସି ସମୟରେ ଅନୁଭୂତି ଏବଂ ଆବେଗଠାରୁ କବିତା ଅଲଗେଇ ଯାଉନି । କୌଣସି ଏକ ନିର୍ଦ୍ଦିଷ୍ଟ ଛାଞ୍ଚରେ ଅନୁଭୂତି ଅବା ଆବେଗକୁ କବିତା ଧରି ରଖିବାକୁ ଚାହୁଁନାହିଁ । କବିତାର ଆଙ୍ଗିକ, ତାର ମାଧ୍ୟମ ଏବଂ ତାର ଅନୁଭୂତି ଭିତରେ ଦୂରତା ରହୁନାହିଁ । କୃତ୍ରିମତା ରହୁନାହିଁ । ଏହା ଯେମିତି ସହଜ ଅନ୍ତରଙ୍ଗ ଆଳାପ ପରି । ଷ୍ଟେଟ୍‌କାର୍ଡ଼ର ଲଘୁତା ଭିତରେ କେତେ ଭାବରେ ବକ୍ତବ୍ୟଟି ପ୍ରକାଶିଯାଏ, ଅନୁଭବର ମରିବଟାକୁ

ନିବିଡ଼ ଭାବରେ ଧରି ରଖେ । ଏହିପରି କବିତା ଲେଖିବାର ସଫଳତା ନୁହେଁ, ତାର ପ୍ରୟାସ ହିଁ ଭଲେ ଭଲେ ଲାଗେ । ଭଲେ ଲାଗେ ଅନ୍ତରଂଗ 'ଆକୁଳ କାନରେ ଜୀବନର ଗପ' କହିଯିବାର ଅକୃତ୍ରିମ ଢଂଗଟି ।

ହୃଦାନଂଦଙ୍କ ଏ 'ଜୀବନର ଗପ' ଅତି ସରଳ । କିଂତୁ ନିବିଡ଼ । ଏଥିରେ ଅଛି ଅତି ସାଧାରଣ ଆବେଗର ନିବିଡ଼ତା । ସେ ଆବେଗଟି ହେଉଛି ପ୍ରେମ । ଏ ପ୍ରେମ ପୁଣି ଯୌବନର ସ୍ୱପ୍ନଦଗ୍ଧ ଆଦ୍ୟ ପ୍ରେମ । ଜୀବନର ଜଟିଳତାରେ କଣ୍ଟକିତ ନୁହେଁ । ତେଣୁ ଅତି ଆଦିମ ଆବେଗର ନୂଆ ଦିଗନ୍ତ ନୁହେଁ । ଜଟିଳ ଗାମ୍ଭୀର୍ଯ୍ୟ ନୁହେଁ, ଗଭୀର ଅନ୍ତରଂଗତା ହିଁ ରୂପ ପାଏ ଅତି ସରଳ ଭାବରେ । ସଂଗୀତମୟ ହୋଇ । ପ୍ରେମ, ବିରହ, ସ୍ୱପ୍ନ ପୁଣି ମିଳନର ବ୍ୟାକୁଳତା ଅତି ପାରଂପାରିକ ଅଥଚ ଚିରଂତନ ଅଭାବ ଗୁଡ଼ିକ ରୂପ ନିଏ ଆଉ ଏଗୁଡ଼ିକୁ କ୍ଷଣିକପାଇଁ ଜଂଜାଳ ଭିତରେ ପୋତି ପକାଉଥିବା କିମ୍ବା ତଥାକଥିତ ନୂତନତାର ଦାବୀ ଦେଇ ଏଗୁଡ଼ିକ ଉପରେ ଗୁରୁତ୍ୱ ଦେଉନଥିବା ଆଜିର ମଣିଷ ପାଖରେ ଏସବୁ ଏପରି ଅକୃତ୍ରିମ ପ୍ରକାଶ ଭଲେ ରକମ ଲାଗେ । ନୂଆ ଲାଗେ । ଭଲ ଲାଗେ । ଏହି ବ୍ୟତିକ୍ରମ, ସହଜ ସରଳ ଅଥଚ ନିଜସ୍ୱ ଭାବରେ ଅତି ପରିଚିତ ଆବେଗ ଗୁଡ଼ିକର ପ୍ରକାଶ ହିଁ ତ କବିତା । ମନକୁ ଛୁଉଁଥିବା କବିତା । ଆଉ ଥରେ ମନକୁ ଛୁଇଁଗଲେ ସେ ଯେଉଁ ଆନଂଦ ଦିଏ ତାହାହିଁ ତ ନାଂଦନିକ ଆନଂଦ । ଏଥିପାଇଁ ସବୁବେଳେ ବିଶାଳନଦୀ କିଂବା ସମୁଦ୍ରର ପ୍ରୟୋଜନ ନୁହେଁ । ଝରଣାର କୁଳୁ ମଧ୍ୟ ଏହା ଦେବାକୁ ସକ୍ଷମ ହୃଦାନଂଦଙ୍କ କବିତା ଅନୁଭବର ବିରାଟ ବର୍ଣ୍ଣାଳୀ ନୁହେଁ, ଏହା ଜୀବନର ଜଟିଳତା ଓ ବିଭିନ୍ନତାକୁ ସବୁଭାବରେ ଧରି ରଖିବାର ପ୍ରୟାସୀ ନୁହେଁ । ଜୀବନର ଶ୍ରେଷ୍ଠ ଶ୍ରେଷ୍ଠ ଆବେଗ ଗୁଡ଼ିକୁ ନିବିଡ଼ ଭାବରେ ଧରି ରଖିବାର ପ୍ରୟାସୀ । ଏହାହିଁ ତ ଜୀବନର ଚିରଂତନତା, କବିତାର ଆଂତରିକତା ।

ଜୀବନର ଏହି ଚିରଂତନତା କବିଙ୍କ ପାଖରେ, ଫୁଲ, ନଈ, ଅଂଧାର ଜୋଛନା ଓ ନୀରବତା । ଏହି କେତୋଟିର ଜରିଆରେ ସେ ପ୍ରେମର ସମ୍ପର୍କକୁ ପ୍ରକାଶ କରିବାର ପ୍ରୟାସୀ । ଜୀବନତ ପ୍ରେମପାଇଁ 'ଲତ ଲତ ଲଳିତ ଅଂଧାର' ଆଉ ତାଙ୍କ କବିତା ଏହି 'ଲଳିତ ଅଂଧାର'ର ଉଦାହରଣ । ଏହା ସୁନ୍ଦର, ମନକୁ ଛୁଇଁଯାଏ ମାତ୍ର ତଥାପି 'ଅଂଧାର'

କାରଣ ଯୁକ୍ତିଦ୍ୱାରା, ପ୍ରଜ୍ଞାଦ୍ୱାରା ତାକୁ ବିଶ୍ଳେଷଣ କରି ହୁଏ ନାହିଁ । ଅଂଧାରର ରହସ୍ୟର ପ୍ରତୀକ । ଗଦ୍ୟ ତ ଦିନପରି । ସବୁସ୍ପଷ୍ଟ । ମାତ୍ର କେବଳ କବିତାରେ ହିଁ ଥାଏ ଅଂଧାର । ରହସ୍ୟମୟୀ ତାରାଭରା ଆକାଶ ତାଙ୍କ କବିତା :

'ନ ଛୁଇଁ ଛୁଇଁଲି ଦେହ, ସୁଲୁ ସୁଲୁ ଦକ୍ଷିଣା ପବନ
ନ ଛୁଇଁ ଛୁଇଁଲା ମନ, ମାଳିନୀଙ୍କ କୁଳୁକୁଳୁ ସ୍ୱନ
ନ ଛୁଇଁ ଛୁଇଁଲି ଓଠ ଟିଇଭରି ଅଂଗୁର ଚୁଂବନ
ନ ଛୁଇଁ ଛୁଇଁଲା ଆଖି, ଠିକ ଜହ୍ନ ଝଲମଲ ଢେଉର କଂପନ'

ହୃଦାନଂଦଙ୍କ କବିତାରେ ଏହି ଆବେଗ, ଏହି ଅନୁଭବର ପ୍ରକାଶ ନୁହେଁ, ତାଙ୍କ କବିତାଟି ଠିକ୍ ଏହିପରି । ନ ଛୁଇଁ ଛୁଇଁଯାଏ ଆଉ ଛୁଇଁଯାଇ ରହିଯାଏ 'ମିଠା ନିର୍ଜନତା' ହୋଇ, ଲଳିତ ନୀରବତାଟିଏ ହୋଇ । ଏହି ନୀରବତାକୁ ଧରି ରଖିବାପାଇଁ ତାଙ୍କ କବିତା ବହୁଭାବରେ ସଂଗୀତମୟୀ । ତାଙ୍କ କବିତାର ସଂଗୀତମୟତା ଆରୋପିତ ନୁହେଁ । ଏହା ପୁଣି ଶବ୍ଦର ଧ୍ୱନିଗତ ସହାବସ୍ଥାନ ନୁହେଁ । ଏହା ତାଂକ ଆବେଗ ଏବଂ ଅନୁଭବର ଅଂଶଟିଏ । କୋଳାହଳମୟ ଆଜିର ପୃଥିବୀରେ ତାଂକ କବିତା ନୀରବତାର ଝଂକାରକୁ ଧରି ରଖିବାର ଗୁଣୁଗୁଣୁ ପ୍ରୟାସଟିଏ । ଏହି ପ୍ରୟାସଟିହିଁ ତାଂକର ବିଶେଷତ୍ୱ ।

ହୃଦାନଂଦଙ୍କ କବିତା ପ୍ରେମର କବିତା । ଏ କବିତା ଗୀତ । ଯାହା ନ ଶିଖି ଗାଇ ହୁଏ । ଆଉ ଗାଇବା ଭିତରେ ଶବ୍ଦର ସବୁ ନୀରବତା ଆଉ ସତ୍ୟର ସବୁ କୁହୁକକୁ ବୁଝି ହୁଏନି ଅନୁଭବ ହୁଏ ।

ମୋର ବିଶ୍ୱାସ ହୃଦାନଂଦଙ୍କ କବିତାରେ ଏହି ଚେତନାର ସୂକ୍ଷ୍ମତା ଆହୁରି ପ୍ରଖର ହେଉ । ତରୁଣ କବିମାନେ କବିତାକୁ ଆହୁରି ମୁକ୍ତ, ଆହୁରି ସ୍ୱଚ୍ଛଂଦ କରି ତୋଳନ୍ତୁ । କବିତା ପୁଣିଥରେ ବଂଚିବାର ଧାରାକୁ ରସାଣିତ କରୁ

ଆଜିର କବି ହେଉ

'ନିଜେ ତୁ ନିଜର ମନ,   ନିଜମତେ   ନିଜର କବିତା'

ହୃଦାନଂଦଙ୍କୁ ମୋର ଆଶୀର୍ବାଦ । ତାଙ୍କ ଲେଖନୀ ଦୀର୍ଘଜୀବୀ ହେଉ । ନିଜର କବିତା ନିଜ ଭାବରେ ଲେଖିପିବାର ଶକ୍ତି ସଂଗ୍ରହ କରୁ ।

ଭୁବନେଶ୍ୱର

୨୫ । ୧୨ । ୮୯

# ଅନଂତ ପ୍ରେମର ଗୀତ

# ଆରଂଭରେ

— ହୃଦାନଂଦ ପାଣିଗ୍ରାହୀ

ସୁଖଦୁଃଖର ଏହି ପୃଥିବୀ ଉପରେ କେତେସ୍ୱପ୍ନ, କେତେ ଦୁଃସ୍ୱପ୍ନ, କେତେ ଶୋଷ, କେତେ ଅବଶୋଷ, କେତେ ଆଶା କେତେ ନିରାଶା, କେତେ ସଫଳତା କେତେ ବିଫଳତା ସତରେ ! ଯାହାକୁ ନେଇ ଏ ଜୀବନ । ଏଇମିତି ଜୀବନ ଭରି ଖାଲି ସୁଖ ଆଉ ଦୁଃଖର ସଂଗୀତ । କେତେ ରାଗ, ରୋଷ କେତେ ମାନ ଆଉ ଅଭିମାନ ପଛକୁ ଫେରି ଚାହିଁଲେ ସେସବୁ ଜହ୍ନରାତି ପରି ଦିଶେ ସୁନ୍ଦର ।

ଅତୀତର ସ୍ମୃତି କେତେ ମଧୁର ସତରେ । ନଈର ଢେଉ, ଝିଲମିଲ ପାଣି, ଜହ୍ନଭିଜା ରାତି, ତାରାଫୁଲର ଆକାଶ—ତା'ଭିତରେ ହଜିଯିବାର ଦିନଗୁଡ଼ିକ ମନେ ପଡେ ବେଳେବେଳେ ନିରୋଳାରେ ! ଅତୀତ ସ୍ୱପ୍ନର ସେଦିନ । ଭାବପ୍ରବଣ ହୋଇ ପଡ଼ିବାର ଦିନ । ସେତେବେଳେ ଶରୀର ଗ୍ରନ୍ଥି ଭିତରେ ଭରି ରହିଥିଲା ଉଷ୍ଣତା । ଓଠରେ ଭରି ରହିଥିଲା ଅଧୀରତା । ଚଂଚଳ ହୋଇ ଉଠୁଥିଲା ଆଖି ପତା । ଆଖିରେ ଓଠରେ କେତେ ବେଶି ଶବ୍ଦ ଥିଲା ସତେ ! ଗଛ, ଲତା, ପତ୍ର, ଫୁଲ, ନଈ, ଜହ୍ନ ସବୁଠି ଭାସି ଉଠୁଥିଲା ଖାଲି କବିତାର ଛବି । ସବୁଠି ଶୁଭି ଯାଉଥିଲା ସଂଗୀତର ସୁମଧୁର ରାଗିଣୀ ।

ଜହ୍ନ ଦେଖୁ ଦେଖୁ ରକ୍ତରେ ଲାଗି ଯାଉଥିଲା ନିଆଁ । ଅଭିସାର ରାତି ଚୋରାଇ ନେଉଥିଲା ଆଖିରୁ ନିଦ । ଝିଲମିଲ ଉତ୍ତାପରେ ଭରି ଯାଉଥିଲା ଦେହ, ମୁହଁ ଆଖି ଆଉ କାନ । ତରଳି ଯାଉଥିଲା ଆପଣାର ସୁକୁମାର କାତର ଅସ୍ତିତ୍ୱ ।

ଲୋଭମାନ୍ଧ ଆଖିରେ ଓଠରେ ହଜିବାର ସେ ସୁରଭିତ ମୁହୂର୍ତ୍ତ ଗୁଡ଼ିକ ଫେରି ଆସନ୍ତାକି ? ସେଇ ଅଶ୍ରୁ-ମଧୁର ଅନୁଭୂତି ସବୁ ଆଉ ଥରେ ଥରେ ଛୁଇଁ ଯାଆନ୍ତାକି !
କିଂନ୍ତୁ ତା' ତ ଫେରିବାର ନୁହଁ ।

ମକରସଂକ୍ରାଂନ୍ତି
୧୪। ୧। ୯୦

# ଅନଂତ ପ୍ରେମର ଗୀତ

କେଉଁ ଗ୍ରିଷ୍ମ କାଟି ନାହିଁ ଜହ୍ନ ରାତି
ପ୍ରେୟସୀ ପାଖରେ
କେଉଁ କୃଷ୍ଣ ଲୋଡ଼ି ନାହିଁ ରାଧିକାକୁ
ପ୍ରଲୁବ୍ଧ ଅଂଧାରେ ?

ବର୍ଷାରେ ଭିଜିବାକୁ ଯାଇ
କିଏ ଓଦା ନ ହୋଇଛି
ଖରାର ଜ୍ୱାଳାରେ କିଏ
ନଆଁ ଫୁଲ ନ ହେଉଛି
କଳାକାଠ ନ ପଡ଼ୁଛି କିଏ କୁହ
ବଇଶାଖୀ ଝାଂଜର ତାତିରେ
ଏବଂ ଅନନ୍ତ ପ୍ରେମର ଗୀତ ନ ଗାଇଛି
ବୁଲି ବୁଲି ଜଂଗଲ କୂଳରେ ?

କିଏ ନ ହୋଇଛି
ଝରନ୍ଧାରରେ ଟୁକୁରା ଟୁକୁରା
ଛାତିରୁ କାହାର ଭୁଷୁଡ଼ି ନ ପଡ଼ୁଛି
ଦଂଭର ବଖରା
ରକ୍ତରେ କାହାର ନହଡ଼ି ନ ଭାଙ୍ଗିଛି
ନଦୀ ଓ ସମୁଦ୍ର
ଆଖିରେ କାହାର ଲେଖି ହୋଇ ନ ଯାଇଛି
ଗୃହାଣିର ବଚସ ଚମକ ?

ଗୋପଦାଣ୍ଡ଼ି ଯେତେ ମନା ହେଲେ
ଇଚ୍ଛା ସବୁ ସେତିକି ପ୍ରଖର
ବଗିଚ୍ଚାରେ ବାଡ଼ ଯେତେ ବୁଜାହେଲେ
ଫୁଲ ତୋଳିବାର ଚେଷ୍ଟା ସେତିକି ପ୍ରବଳ

କେମିତି ବା ରୋଧ ହେବ
ଝରଣାର ଅଂଧାରି ସୁଅକୁ
କେମିତି ବା ଏଡ଼ି ହେବ
ସୁକୁମାରି ଇଚ୍ଛାର ଦେହକୁ ?
ଦୋହଟେଇ ଦୋହଟେଇ କାନ୍ଦିଉଠେ ଦେହମନ
ଧୂଳିର ବୃତ୍ତରେ ଖେଳେ ଶବ୍ଦଂକ କଂପନ
ଆଉ କପଂନର ଦାସଦାସୀ ସେ ସୁଅରେ
ଶୁଖିଲା ପଥର
ମୁଁ ଏକ ଆଦମ ଭିକ୍ଷୁ, ଏକମାତ୍ର ମୋ ପ୍ରିୟାର
ଅନୁକଂପା ସ୍ନେହ ସୋହାଗର ।

କିଏ ଓଦା ନ ହୋଇଛି
ଫଂକ କିଏ ନ ଦେଇଛି
ପଦୁଅଁ ତୋଳିବା ପାଇଁ ଗାଆଁ ପୋଖରୀରେ
ସିଗାରେଟ ଦୋକାନକୁ ବୁଲିଯାଇ
କିଏ ଥରେ ପୋଡ଼ା ଦାଗ ନ ଦେଇଛି
ଟେରିଲିନ୍ ଜାମାର ଦେହରେ ?

ସାଲଂଦୀକୁ ପଚାରିଲେ ସେ କହିବ
କେତେଥର ବୁଲି ଅଛି କାଶତଂଡ଼ୀ ଫୁଲଂକ ଗହଳେ
ସଂଧିଆକୁ ପଚାରିଲେ ସେ କହିବ
ମୋ ଜ୍ୱଳନ ଯିବା ଆସିବାରେ
ମାଳୀକୁ ପଚାରିଲେ ସେ କହିବ
ମଲ୍ଲୀ ଫୁଲ ପାଇଁ ମୋର ଯଂତାପୂତ ବଗିଚ୍ଚା ଭିତରେ.

ଛୁଟି ଦିନଂକୁ ପଚ୍ଚରିଲେ ସେମାନେ କହିବେ
ମୋ ଚେତନା, ସ୍ୱପ୍ନ ଆଉ ଦିନ ଗଣନାରେ ।
ପଲଂକକୁ ପଚ୍ଚରିଲେ, ଦେହ ବାସ୍ନା ଫିଟି ଯିବେ
ସବୁ ପୂର୍ବ ସ୍ମୃତିମାନଂକର
ଚଟିଂକୁ ପଚ୍ଚରି ଦେଲେ ସେମାନେ ଠିକଣା ଦେବେ
ଗୋଟି ଗୋଟି ଅଜ୍ଞାତ ଦିନର ।

କହିି ଫୁଲଆ ସ୍ୱପ୍ନରେ ଖୋଜେ ଆଜ ସୁଂଦରରେ
ଆଧିକଥା, ଗତକଥା, ଫୁଲ୍‌କଥା, ମହୁକଥା
ନଆଁକଥା, ଚଆଁକଥା, ଏବଂ ଯେତେ ସବୁ କଥା
ଗେଲବସରର ଦିନମାନଙ୍କରେ ।
ଅସରା ଅସରା ବର୍ଷା ପବନ ଆସୁଚ ପ୍ରେୟସୀରେ
ଫୁଲମଞ୍ଜି ଆଜ ତୋର ହାତଲଣ୍ଠା ବେଢ଼େଇ
ମୋ ଦେହର ସହକାରେ ଥରେ ।



# ହଜିବାର ବେଳ

କଏ ଡାକେ ଜହ୍ନର ଡଂଗାରେ ମୋତେ
ମିଟିମିଟି ତାରାଂକର ଗପ ଶୁଣିବାକୁ
କଏ ସେ ଛଇଳ ନଈ ଗୀତ ହୋଇ ଛୁଇଁଯାଏ
ଆକୁଳ କାନକୁ
ଇଚ୍ଛାହୁଏ ହଜିଯିବ ପବନରେ
ହଜିଯିବ କଜଳ ଆଖିରେ
ଇଚ୍ଛାହୁଏ ଝରିଯିବ ଆବେଗର ଆଶାବର୍ଷା
ତରୁ ତୃଣ ଲତା ଓ ପତ୍ରରେ
ଇଚ୍ଛାହୁଏ ଛୁଇଁ ଦେବ
ଆକାଶର ଜହ୍ନ, ତାରା, ଫୁଲର ଚିବୁକ
ତା' ଭିତିର ତମାଳ ବନରେ ଆଜ
ମୁଁ ଏକ ଅଧିର ବସଂତ ।

ଜର ଜର ଲାଗେ ଗୁଣ୍ଠି
ଆଖି ଆଉ ଓଠରେ କଂପନ
ରଂଗୀନ ରଂଗୀନ ଲାଗେ ଆଖିର ସପନ
ଛଳଛଳ ଅଧରଟା ଛୁଇଁଯାଏ ଦେହମନ
ତାଳୁରୁ ତଳପା ଯାଏ ଶିହରଣ
ସିର ସିର ମଧୁର ରୋମାଂଚ ।

ଭଲ ଲାଗେ ନିରୋଳାରେ ବୁଲିବାକୁ ଏକା ଏକା
ଗାଇବାକୁ ଚୁପି ଚୁପି ଫଗୁଣ ମଲ୍ଲାର
ଭଲ ଲାଗେ ବୁଲିବାକୁ ଅସରା ସ୍ୱପ୍ନରେ ଭାସି
ଛଂଦ ହୋଇ ଜୋଛନାର ଝାଲେରରେ

ଫୁଲ୍ ପାଖୁଡ଼ାରେ ଥାପି
ମହୁ ଭର୍ତ୍ତି କଂପିଛ ଅଧର

ନର୍ଦ୍ଦ୍ମ ନର୍ଦ୍ଦ୍ମ ରାତି
ଫୁଲବଣ, ଛବଳ ଆକାଶ
ରୂପସୀ ଜୋଛନା ପରି ବ୍ୟାପିଥିବା ମନ ତା'ର
ଆକାଶ ଗୋଟାକ
ତାରା ଭରା ସପନରେ ଖବୁ ଖବୁ
ଚକ୍‌ମିକ୍ କବିତା - ପ୍ରଶଂସା ତା'ର
ମନେପଡ଼େ ସବୁଜ କଣ୍ଟକ
ଆଉ ଥରେ ପଢ଼ୁ ପଢ଼ୁ ଚିଠି ତା'ର
ନଈ ପରି ଅଧିର ଅଧିର ଲାଗେ
ଜୀବନର ଗପ ।



# ନାଚି

ତୋ ପାଦର ନୂପୁର ଧ୍ୱନିରେ
ଫୁଲ ଫୁଟିବା, ଶଙ୍ଖ ଉକୁଟିବା
କିଂବା ଯମୁନା ବହିଯିବା
ଖାଲି କବିଟିର ବଚନ କଳ୍ପନା ନୁହଁରେ ସୁଂଦରୀ
ସ୍ୱପ୍ନରେ ତ ଶରକାଳ ବାସ୍ନା ଲଗେ ଝାଂଗର ମାଟିରେ
ଅଷାଢର ପହିଲୁ ବର୍ଷାରେ
ପ୍ରୀତିମୟ ହୋଇଯାଏ ମାଟିର ସଂଗୀତ
ଆକାଶରୁ ଖସିପଡ଼େ ମୟୂର ଚଂଦ୍ରିକା
ନୂଆ ନୂଆ ସରାଗରେ କେରାକେରା କେଶ ପରି
ମେଘ ବି ଗୁନ୍ଥେଇ ଯାଏ
ଚେତନାର ଆକୁଳ ସନ୍ତରେ ।

ସୁଂଦରୀରେ, ସ୍ମୃତି ସବୁ ଖୋଜିବାକୁ ଚାଲିଯାଂତି
ସରୁବାଲି, ଝାଉଁବଣ,
ଚଢ଼େଇଂକ ମିଠା ସ୍ୱର, ନଈର ନୂପୁର
ମେଘ ତ ଓହ୍ଲେଇ ଆସେ ଗଛର ଗୁଡ଼ିରେ
ମୟୂରୀ ନାଚଇ ତା'ର ପୁଚ୍ଛଟୋଳି
ଆହ୍ଲାଦରେ, ସବୁଜ ଇଙ୍ଗିତରେ
ଖୋଲା ଝରକାରେ ଦିଶେ ଘନଘନ ବିଜୁଳି ଚମକ
ଏତେବେଳେ ତୁଇ ଲୋଟିପଡ଼ୁ ଭୟରେ
ପବନରେ ଲଟେଇ ଯାଉ ପୁଣି ଶୀତେଇ ଉଠୁ
ମୁଁ ସଜାଡ଼ି ଦିଏ, ଗାଲ ଉପରେ ପଡ଼ିଥିବା
ତୋର ଅବିନ୍ୟସ୍ତ ଚୁନି ଚୁନି କେଶ
ବେଳେବେଳେ ଉଡ଼ିଯାଉଥିବା ବକ ପଙ୍କ୍ତି ପରି
ତୋ' ଶାଢ଼ୀର ଅଂଚଳ

କେଡ଼େ ଚଂଚଳ ସତେ ସୁଂଦରୀ
ଲଳିତ ଲୟରେ ଘୂର୍ଣ୍ଣ ତୋର ନୀରବ ରାଗିଣୀ
ଝାଉଁଳା ପଡ଼ି ଭ୍ରୁ ଦୁହୁଁ
ତୋ' ଅଳସ ଆଖିରେ ମୁଁ ଲେଖେ
ତୋ' ଲାଗି କାହ୍ନୁର କବିତା ।

ଆଜିଠି ହୁଏ ନଶ୍ୱର ଲହରୀ
ମନଲୋଭା ନୀଳ ମେଘ ପରି ଖସିଯାଏ ଚହଲି ଚହଲି
ସ୍ୱପ୍ନ ସରେ ନାହିଁ , ସରିଯାଏ ନାହିଁ
ସମସ୍ତ ବି ଅଟକି ଯାଏନା
ଭୁଲି ପାରେନା, କିଛି ଭୁଲି ପାରେନା
ନଶ୍ୱର କଜ୍ଜଳରେଖା କେମିତିକା କୁଂଚହୋଇ ନିଭିଯାଏ
ଶେଯରେ ମଉଳେ ମଲ୍ଲୀ
ସ୍ୱପ୍ନ କେବେ କେଉଁ କାଳେ ପୋଛି ହୁଏ ନାହିଁ ।

ତୋ' ବାଟ ଚାହିଁବା ସରି ଯାଏନା
ପ୍ରତିବିଂବ ଉବୁଟୁବୁ ହେଉଥାଏ
ଦୁଃଖ ସରିଯାଏ ନାହିଁ
ମନ ସଦା ଲୋଟୁଥାଏ
ତୋ' ପାଦର ନୂପୁରରେ ନଶ୍ୱ ବନ୍ଧେ
ବନ୍ଧାଯାଏ ନଶ୍ୱ ।



# ସାଳଂଦୀ

ସେଠି ଚନ୍ଦ୍ର ରାତି ପାଲଟଇ ଶଠି
ମିଠା ଗୀତି : ଜୋଛନାର ରାତି
ସାଳଂଦୀର ରାତି ।

ସେଠି ଖାଲି ସପନର ଫାଳ ଢେଉ
ଖିଲି ଖିଲି ହସ
ସେଠି ଖାଲି ସାଗ ଧନ
ସ୍ମୃତିର ଜଂଜାଳ
ସେଠି ପୁଣି ଆଲୁଅ ଓ ଛାଇର ଅଂକନ
ମିଠୁ ମିଠୁ ମହକର ଗହଳ ଚହଳ ସ୍ୱର
ଭୁନଟାନ ଫୁଟୁଥିବା କବିତାର ଫୁଲ

ନରମ ବାଲିରେ ସେଠି
ଗୋଲ୍ ଗୋଲ୍ ଅକ୍ଷରର ମନ
ଫୁଲ ଅଂକା ପାଦ ଚିହ୍ନ
ହୃଦସ୍ପୃଶ୍ୟର
ସେଠି ପୁଣି ମୋ ନାଆଁ, ମୋ' ଠିକଣା
ମୋ ଛାଇର ବିରହ ସଂଗୀତ ।

ସାଳଂଦୀର ଫାଳ ଜଳ :
ଢେଉ ଆଉ ଢେଉର ମହ୍ଲାର
ସେ ଦେଲା ସପନ ମୋତେ
ଏ ଆଖିରେ ଭରି ଦେଲା
ମିଠି ମିଠି ମମତାର କବିତା ଆସର ।

ଏକା ଏକା ବସି ମୁହଁ
କେତେବାର ତା' କୂଳରେ
ଅଳସ ଭାଂଟିଛି
କେତେବାର ଝିକମିକ ଶବ୍ଦ ହୋଇ
ଝୁରି ଝୁରି ଝରି ଅଛି
ତା' ସ୍ନେହର ସ୍ୟାହ୍ନ ନେଇ
ବରଷର ଛବି ବି ଆଂକିଛି
ତା' ବିନା ମୋ' କଥା ଆଉ କିଏ
ଅଧିକ ବୁଝିଛି ?



# ସାଲଂଘୀ ଜହ୍ନରାତି

ଜହ୍ନରୁ ଝରୁଛି ଫୁଲ
ବିଂଦୁ ବିଂଦୁ ଶବ୍ଦର ଅତର
ପରିକ୍ରାନ୍ତ ଜହ୍ନରାତି ବାଙ୍ମୟ, ଗୀତିମୟ
ସାନ ସାନ ଆବେଗରେ ସୁଖିତ ଓ ରୋମାଂଚିତ
ମିଠା ମିଠା ସଂଗୀତର ସହସ୍ର ଆସର ପରି
ନବକାଶ ସୁଖରେ ବିଭୋର ।

ଝରି ଆସେ ଝରି ଝରି ଆଲୁଅର ବରଷା ଓ
ପୁରାତନ ଆଲୁଅ ଅଂଧାର
ଝରି ଆସେ ନୁପୂରର ଅସୁମଘ ସ୍ନେହ ଧ୍ୱନି
ଅବିରତ ରୁଣୁଝୁଣୁ ମୃଦୁ ଝଡ଼ ନନ୍ଦବାଳା ଗଳ୍ପର ।

ଏ ସାଲଂଘୀ ନକ୍ଷତ୍ରଠା ହସର ବର୍ତ୍ତିଗୁ ପରି
ଫୁଲର ଫସଲ ପରି ଛଳ ଛଳ
ଅନଂତ ସ୍ନେହରେ
ସ୍ମୃତି ପରି, ନେଉ ପରି, ଭିଜା ଭିଜା ଘାସ ପରି
ଘୁଇ ଆଉ ଆଲୁଅର ଲୁଚକାଳି ଖେଳ ପରି
ଛଂଦମୟ, ମୋ ସ୍ୱପ୍ନର ପ୍ରତିଟି ମନରେ ।

ଏ ସାଲଂଘୀ ବେଳେବେଳେ ମନେ ହୁଏ :
ତୁମ ଭ୍ରୂରୁ କୁଂଚନର ଧାଡ଼ିଏ କବିତା
ଚେତନାର ଠିକଣା ବା ଖୋଜୁ ଖୋଜୁ ଅନ୍ୟ ମନସ୍କତା
ସଂପର୍କର ଲଳିତ ବିଭବ କିଂବା
ଭାବ ଏବଂ ଅଭାବର ଭେଟ

କେତେବେଳେ ଆବେଗର ସରଳ ଅଂକନ
ଯାହା ଚିରଂତନ ଅଭିସାର, ଛନ୍ ଛନ୍ ପଦର ପୁଲକ
ଚକ୍‌ମିକ୍ କବିତାରେ ମଥିତ ଓ ଉଚ୍ଛାଟିତ
ପୁରାତନ ଅଳି ଓ ଅର୍ଦ୍ଧ ପଣ
ଚକିତ ପ୍ରଶ୍ନର କେତେ ସବୁଜ ସ୍ୱଭାବ ।

ଏ ସାଳଂଘା ଜହ୍ନ ଆଉ ତାରାଂକ ଦର୍ପଣ
କୁହୁକର ଇତିହାସ, ନିଦ ନିଦ ଛୁଇଁ ଓ ସପନ
ସୁଦୂର ଆଦ୍ୟମରେଖା, ଅଂକାବଂକା ରାସ୍ତାଟିଏ
ଝଲମଲ ଅଂଧାରର ପ୍ରାଣମୟ ସ୍ରୋତଟିଏ
କେଉଁଠାକୁ ବହିଯାଏ, ବହିଯାଏ କେଉଁ ସମୁଦ୍ରକୁ ?
ତରଂଗର ସାନ ସାନ କଂପନ ଓ
ମମତାର ଟିପି ଟିପି ମୁରୁକକୁ ନେଇ
ମିଶିଯାଏ କେଉଁ ମାଳ ଅଂଧାର ମଝିକୁ ?

ଏ ସାଳଂଘା କବିତାର ନକ୍ଷ
ପାର୍ଥିବ ବା ଅପାର୍ଥିବ ସ୍ୱପ୍ନର ଆବୃତ୍ତି
ଜୀବନର ଧୂ ଧୂ ନିସ୍ତ୍ରଟ ବାଟରେ ଏକ
ଚିରଂତନ ଛୁଇଁ
ଯାହା ଦୁଃଖକୁ ଓଟାରି ନିଏ
ନିଏ ମୋର ହୃଦୟ ବସ୍ତିରୁ
ଲୁହ ମୋର ଶୁଖିଯାଏ, ଲିଭିଯାଏ
ନାଟକର କରୁଣ ଦୃଶ୍ୟରୁ ଏବଂ
ଆନ୍ତରର ଝର୍ ଝର୍ ଆବେଗ ଧାରରୁ ।

ମୋ ଆଡ଼ିକୁ ଚାହିଁ ରହେ ଚମତ୍କାର ଜହ୍ନ ରାତି
ମଉଳା ଶୋକର ଶବ ଯାଉଥାଏ ଝରି ଏବଂ
ଯାଉଥାଏ ଝରି ।
ସାଳଂଘାର ଜହ୍ନରାତି ଡାକିନିଏ ମୋତେ

ଗଣିତର ଗୁମାନରୁ ନାଟକର ନାଚ ମଂଡ଼ପକୁ
ବିଷାଦର ବଖରାରୁ ବଗିଚ୍ଛର ହସହସ କୋମଳ ଫୁଲକୁ
ଝିଲକାଇ ଦିଏ ମୋର ରୋଗ ଶଯ୍ୟା ଏବଂ
ଛିଂଚିଦିଏ ସ୍ନେହର ପବନ ସବୁ
ମୋ ଆକୁଳ ଆକାଶକୁ
ଆଉ ମୋର ନିଃଶ୍ୱାସର ନିଶବ୍ଦ ଧାସକୁ ।

ଜହ୍ନ ରାତି ବର୍ତ୍ତିମାନ କେଂଦ୍ରବିଂଦୁଟିଏ ମୋର
ଚାରିଆଡ଼େ ପବନର ବିଶିଷ୍ଟ ଲହଡ଼ି
ମୋ' ହାତରେ ଲଳିତ ସ୍ୱପ୍ନର ଜହ୍ନ ପ୍ରାଣେଶ୍ୱରୀ
ଆମ ଚାରିପାଖେ ଗଛ ଏବଂ ଲତାର ଗହଳି
ଆମ ସୁରଭିତ ନିଃଶ୍ୱାସରେ
ଏ ସାଲିଂଗୀ, ଜହ୍ନ ରାତି ସବୋପରି ଯାଉଛି ଚହଲି ।



# ନାୟକ ଉବାଚ

[ ଏକ ]

କିଛି କହିବି ବୋଲି କହି ପାରେନା ପ୍ରାଣେଶ୍ୱରୀ
ଗୃହିଣୀର ଭ୍ରୂର ନିଭିଯାଏ
ନୀରବତା ପାଲଟିଯାଏ କବିତା
ଖବର ତ ମିଠା ଖବର : ଦିନର ଜୋଛନା
ନୀରବ ରହେ ମୁଁ ସହଜେ ତୁ
ଲାଜକୁଳୀ ଲତା ।

କହିବାକୁ ଇଚ୍ଛା ହୁଏ : ଆ ଗୀତ ଗାଇବା, ଆ ।
ଜହ୍ନ ଦେଖିବା ଆ । ସ୍ୱପ୍ନ ଦେଖିବା ଆ ।
ନଈ କୂଳେ ବୁଲି ବୁଲି କବିତା ଲେଖିବା,
ପ୍ରମତ୍ତ ସୁଅରେ ନେଇ ଭସେଇବା
ପ୍ରେମର ପ୍ରତୀକ ଏକ କାଗଜର ଡଂଗା

ତୋ' ଆଖି ତଳେ ତିଳ ଚିହ୍ନ : ନୀରବ ସ୍ପନ୍ଦନ,
ଭ୍ରୂଲତାରେ ହଜିଯାଏ ନିଃସଂଗ ଶ୍ରାବଣ ଆଉ
ମହ୍ଲାର ରାଗିଣୀ, ଯଉବନ
ସ୍ୱପ୍ନରେ ଘୋଟଇ ମୋ'ର ନୂଆ ମେଘ, ଅନୁରୋଧ, ପ୍ରତିଶ୍ରୁତି
ପବନର ମିଛ ମିଛ ପରଶରେ ଉଲ୍ଲସିତ
ପ୍ରାଣର ସରସୀ ।

କବି ବୋଲି ବିଗୁରୁଛି : ମନ ଅଛି କବିତାର
ଅକୁଂଠିତ ବାସନାର, ଅନାସକ୍ତ ଗୃହିଣୀର
ମଂଦିରର, ଯୌବନର, ରୁଣୁଝୁଣୁ ନୂପୁର ଧ୍ୱନିର ।
ଲତାର ବି ମନ ଅଛି, ଗଛର ବି ମନ ଅଛି
ନଈର ବି ମନ ଅଛି, ସମୁଦ୍ରର ମନ ଅଛି

ମନ ଅଛି କୁବ୍ଜାର, ଗୁମାନର
ଅନାସକ୍ତ ଋଷିଂକର, ଅରଣ୍ୟ ଗୀତର ।

ତୋତେ କ'ଣ ଶୁଭେ ନାହିଁ, ସୁକୁମାର ପବନର
ଫିର ଫିର ସ୍ୱର । ତୋତେ କ'ଣ ଦିଶେ ନାହିଁ
ପୁଷ୍ ମାସ ଖରର ଅଳସ । ପ୍ରାଣେଶ୍ୱରୀ,
ଦୁନିଆରେ ସବୁ କିଛି ଦେବା ପାଇଁ, ନେବା ପାଇଁ
ଦେବାନେବା ଭିତରେଇ ହଜିଯିବା ପାଇଁ ।

ମୋତେ ନିତି ଛୁଇଁ ଛୁଇଁ ଯାଉଥାଏ
ବରଷର ଋତୁଟିଏ, ଖରର ଆଂଗୁଠି ବାଜ
କେଂଦରର ଅଭିମାନୀ ଲୁହ ସବୁ
କଂପି କଂପି ଉଠୁଥାଏ
ପ୍ରାଣେଶ୍ୱରୀ, ଭୁଇ ମୋର ଶୂନ୍‌ସାନ୍ ହାହାକାର
ନିଦର ଅଂଧାର

ନିଜ ଅଲକ୍ଷ୍ୟରେ ନିତି ଝରି ଝରି ପଡ଼ୁଥିବା
ଆଶା ଓ ନିରାଶା । ଲୁଚିଛପି ଯାଉଥିବା ପାଦଚିହ୍ନ,
ସତ ମିଛ କଥା । କିଛି ଭଲଲାଗେ ନାହିଁ,
ସଜଫୁଲ, ଜହ୍ନରାତି, ନଦୀ କି କବିତା
ତୋହବିନା, ଏକା ତୋହବିନା ।

ନିଛାଟିଆ କୋଠରୀକୁ ଅଂଡ଼ାଳି ଅଂଡ଼ାଳି
ମିଠାମିଠା ଜହ୍ନରାତି ମଉଳି ଯାଉଛି
କାମନାର ମୁକୁଳା ଦୁଆରେ ମୁହଁ
ଚିରକାଳ ଠିଆ ।
ପ୍ରାଣେଶ୍ୱରୀ ମୋହନ ନିଦ୍ରାକୁ ତୋର
ମେଲେଇଁ ପଠିଆ
କାମନାର ଈଶ୍ୱରକୁ ପୂର୍ଣ୍ଣକର
ଋଂଗୁଡ଼ିଏ ଫୁଲଂକ ସ୍ନେହରେ

ଢେଉ ଢେଉ ପଣତକାନରେ ଲୁହ ପୋଛୁନେ'
ଏଇ ମୋର କପାଳର ଝାଳ
ବେକଟେ ମୋ ଲଂବ ଅଛି ଶୂନ୍ୟପାଳ
ଗୃହିଣୀର ଚତୁର ଦୃଷ୍ଟିରେ
କରିଦେ' ଏକ ପ୍ରୀତିମାଳ ।

ମୁଠା ମୁଠା ମମତାକୁ ବାଂଧିରଖ ପଣତକାନରେ
କହ ତ ବିରହୀ ତୋ'ର ଚଳକାଳ
ନଗ୍ନଟିଆ ଭାବନାରେ ସହଜ ସୁଂଦର
ତୋ' ପାଇଁ ଜହ୍ନରାତି, ଶୋକ ଗୀତି
ଥିର ଥିର ବେପଥୁର କରୁଣ ପାହାଂତି
ଆଉ ଅପେକ୍ଷାରେ ଗୃହୁଁଥିବା
ପୁରାତନ ଶୂନ୍ୟଥାଳ, ବିଜନ ସକାଳ ।



# ନାୟକ ଉବାଚ

## [ ଦୁଇ ]

'ଉପମାମାନେ ଅପମାନେ'
'କେଉଁ ସୁଷମା ସମା ନୋହିଲେ' ତୋତେ ସୁଂଦରୀ
ତୁଇ କବି ଗୀତମୟୀ ନୀରବତା
ନିଜେ ତୁ ନିଜର ମନ, ନିଜ ମତେ ନିଜର କବିତା ।

କେତେବାର ଜହ୍ନ ତରଙ୍ଗିଛି ମୋ ମନରେ
ଝୁମି ଯାଇଛି ଆଖିପତା
କେତେବାର ଓଦା ଓଦା ଜୋହ୍ନାରେ
କହତ ସୁଂଦରୀ, ଅନୁଭବୀ ବିନା କେ ବୁଝିବ
ଆକାଶର ଆକୁଳ ଆବେଗ
କାହିଁକି ଘନେଇ ଆସେ ଅଦିନ ଅଂଧାର
କାହିଁକି ଉକୁଟି ଉଠେ, ଘନ ଘନ ଛିଟା ଛିଟା ଦୁଃଖ
କାହିଁକି କାହିଁକି ଝରାପରର ଆକୁଳ ନିଃଶ୍ୱାସ
ସର୍ବୋପରି, ନାନାବିଧ ଯଂତ୍ରଣାର ସୃଷ୍ଟିପୀଠ;
ଦୁଃଖୀର ଦର୍ପଣ ।

କେମିତି ନୀରବ ହେବ ?
ମଂଦିରରେ କାମନାର ଦୀର୍ଘଶ୍ୱାସ
ବଗିଚାରେ ଗୁଣୁ ଗୁଣୁ ମହୁମାଛି
ସମୀରର ଝିମ୍‌ଝିମ୍‌ ସୁମରଣା
ହୁଉ ହୁଉ ଅସ୍ଥିରତା ଗୋଲାପୀ ନିଆଁର
ତଥାପି ସୁଂଦରୀ,
ତୋ' ଆଖିରେ          ନୀରବନ୍ତ
ତଥାପି କହୁଛି : ତୁ' ମୋର, ତୁ' ମୋର ।

ନେଉଠି ଆସୁଛି ମୋର ଅଭିମାନ
ବିଫଳ ସ୍ୱପ୍ନର ମନ
ଆପଣାର ଭୁଲ୍ଲା ଗୀତ :
ଓଦା ଓଦା ସାଂତ୍ୱନାର ଜହ୍ନରାତି
ଲୁଚକାଳି ଖେଳ ଅବା ପାଲଟିଛି
ଯେତେ ସବୁ—ସବୁ ଯେତେ ତୋ' ପ୍ରତିଶ୍ରୁତି ।

ସ୍ପଂଦଘରେ, ଶୋଷର ବା ଶେଷ କାହିଁ
ଦେହେ ମୋର ନଗ୍ନଟିଆ ଉତ୍ତେଜନା
ଅଚିହ୍ନା ଫୁଲର ବାସ୍ନା
ଶୁନ୍‌ଶାନ୍‌, ଅଣାକାର ଅଶାଂତ କଂପନ
ନିତି ନିତି ନିରୁପାୟ ମମତାରେ
ଲୁହ ପୋଛେ କାମନାର ମନ ।

ଚାହିଁ ଦେଖ ସୁଂଦରୀ,
କେଡ଼େ ସରାଗରେ ଥରି ଉଠୁଛି ଲତାଟିଏ
ଚହଲି ଯାଉଛି ଢେଉଟିଏ
ଉଲୁସି ଉଠୁଛି ଶୋଷଟିଏ
ଅମୁକ ସମୁକ ବିଶ୍ୱାସରେ ମୁଁ ବସିଛି
ଫୁଲ୍ ନନ୍ଦ ହେଉଛି ଗଛରେ
ଅପ୍ରକଟ ଚମକର ନିସ୍ତରଂଗ ରଂଗ
ବୁନ୍ଦ ବୁନ୍ଦ ସବୁଜ ଘାସରେ ।

ଏଇ ଯେ ନିଲଠା ମନ
ନଠେଇ ନଠେଇ ଭାବେ
ସେ ଦିନର ଛମ୍‌ଛମ୍‌ ଜହ୍ନ ରାତି
ପହିଲି ଛୁଆଁର କଥା
ପ୍ରଥମ କବିତା ।

ଝିକି ଝିକି ଅନୁରାଗ ବଉଳି ଯାଉଛି, ମଉଳି ଯାଉଛି
ଲୋଭୀ ନାଗରର
ଜୋଛନା ରାତିକୁ ବସି ଝୁରୁଛି ଚକୋର
ସୁଂଦରୀରେ, ଛୁଇ କବା ଗୁମାନର ମୁଦାମନ
ଲତ ଲତ ଲଳିତ ଅଂଧାର
ଖାଦ ବଢ଼ାଇ ଦେ ସୁଂଦରୀ,
ସେଥିରେ ଲେଖିବ ବସି ନିଜ ନାଆଁ
ହୃଦୟର କରୁଣ ଠିକଣା
ସେଇ ଅଳଙ୍କାର କବାଟରେ ଲୁଚି ଯିବ
ସବୁ ଶୋଷ, ସବୁ ଶୋକ,
ସବୁ ମୋହ, ସବୁ କୋହ
ସବୁ ସବୁ ବିରହର ଭାଷା ।

ମନ ହୁଏ ଏହିପରି :
ପିଂଧିବାକୁ ତୋ' ପାଇଁ କଳଂକର ଟୀକା
ଅକାତକାତ ଦୁଃଖରେ
ବାନ୍ଧିବାକୁ ସ୍ନେହର ନଉକା
ବାଂଧିଦେ ମୋ ମଥାରେ କଳଂକ ମୁକୁଟ
କରିଦେ ଅପେରାର କେଉଁ ଏକ କରୁଣ ନାୟକ
ପାରୁ ଯଦି କରିଦେ ଚିରକାଳ ଲାଗି ମୋତେ
ଅକିଂଚନ ଭିକାରୀଟେ
ବଇଶାଖ କାମନା ଖରାରେ
ଅଶ୍ରୁରେ କରିବ ପୁଣି ଦହନର ଅନୁବାଦ
ବାରଂବାର ଛଂଦ ହେଇ ବୁଲୁ ଥିବ
ଭିତରର ଧୂପ ବାସ୍ନା, ଉଦ୍ଧୃତ ଚିହ୍ନରେ ।

ଝୁଲୁଥିବ ଖୋଜ ଖୋଜ
ସମୁଦ୍ରର ଢେଉ ଛୁଇଁ
ଛୁଇଁ ଛୁଇ କଳା ରାତି
ଡେଇଁ ଡେଇଁ ମାଳ ମାଳ ଗ୍ରାଇ ଓ ନଦୀଙ୍କ
ଯେଉଁ ସ୍ମୃତି ଉଖାରିଲେ
ଜହ୍ନରାତି, ତାରାଫୁଲ,
ଲଙ୍ଗୁଟିଆ ବଲବାଙ୍କ
ଚଇତର ଅଦାଉତି :
ଖାଲି ଯାହା ଝୁରି ହେବା ସାର ।



# ପହିଲୁ ଛୁଇଁଲି ଯେବେ

ପହିଲୁ ଛୁଇଁଲି ଯେବେ ତନୁ ତା'ର
ଥରି ଗଲି ରୋମାଂଚରେ
ଭରିଗଲି ଝିଲମିଲି ଜହ୍ନପରେ
ସେ କେମିତି ଲଜରେ ବୁଡ଼ିଲା ଅବା ଶୀତେଇ ଉଠିଲା
ମନେ ଅଛି, ସବୁ ମନେ ଅଛି
ତା' ଆଖିରେ ଭସାଭସା ନିଦପରି
ନଇଁ ନଇଁ ଯାଉଥିଲା, ଝାଳ ଝାଳ ମେଘର ସୁରଭି ।

କେମିତି ଫାରଂଟା ସିଏ ଅସ୍ତବ୍ୟସ୍ତ ଶାଢ଼ୀଟା ସଜାଡ଼ି
ପବନରେ ତା' କାଂଧରୁ ଯାଇ ଗଲା ଖସି ଖସି
କପଟ ଫାରଂତା ଧରି, କପଟ ଫାରଂଟା ସିଏ
ମିଠା ମିଠା ପବନର ପହିଲୁ ପରଶ ଭୁଲି
ସ୍ୱଭାବରେ ସିଏ ନିଜେ ନିତାଂତ ଅଳସୀ ।

ମୁଦି ମୁଦି ଆସୁଥିଲା ଆଖିପତା
ଅଧା ନିଦ, ଅଧା ସପନରେ
ଫୁଲି ଫୁଲି ଉଠୁଥିଲା ବାହୁର ଆକୁଞ୍ଚ ତା'ର
ଅବଶିଷ୍ଟ ସ୍ୱପ୍ନ ପୁଣି ଦେଖୁଥିଲା
ମିଠି ମିଠି ଗୃହାଣୀରେ
ଭୁନି ଭୁନି ଖୋଜୁଥିଲା ରୋମାଂଚର ମିଠା ଗପ
ତା' ଦେହର ପ୍ରତିଟି ଇଚ୍ଛାରେ ।

ଶୁଣାଇଲି ତା' କାନରେ ଆଷାଢ଼ର ପବନ ମହ୍ଲାର
ଚୁମାରେ ମୁଁ ଓଦାକଲି ତା' ଓଠର ନରମ ଗୋଧୂଳି
ଏ ଛୁତରେ ସ୍ଥିର ହୋଇ ପଡ଼ୁଥିଲା
ଅଳସିତ ଝାଳ ବେଣୀ, ଯମୁନାର ମେଘୁଆ ସୁରଭି ।

ମୋ' ଶବ୍ଦରେ ସିଏ ନିଜେ ଶବ୍ଦ ହୋଇ ମିଶିଗଲା
କବିତାରେ ବହିଗଲା

ମିଶିଗଲା ଚଂପୁ ଓ ଚଂଦନ
ମିଶିଗଲା ନଦୀ ଓ ସମୁଦ୍ର ।
ଝୀଲ ଓ କଜ୍ୱଳ
ଫୁଲରେ ସୁବାସ ଗଲା ନେସିହେଇ
ସ୍ୱପ୍ନ ଗଲା ମିଶି ମିଶି
ଫୁଲ ରଂକ ପୁରୁଷ ମୁଁ, ଫୁଲର ଉପାସୀ ।

ଏତେ ତେଜ, ଏତେ ସ୍ୱପ୍ନ ଛଂଦଯାଏ
ପହିଲୁ ଗୀତରେ ?
ଅଳସ ସମସ୍ତ ଯାଏ ପରଶଟେ ଗୁଡ଼ି ଦେଇ
ଉଦାସୀ ଜୀବନ ମୋର ପୂର୍ଣ୍ଣ ହୁଏ ଚଂଦନ ସ୍ପର୍ଶରେ ।

ଓହ୍ଲାଏ ମୁଁ ଧୀରେ ଧୀରେ ଏକ ବିଂଦୁ ଆନଂଦାଶ୍ରୁ
ସ୍ୱକୀୟା ପ୍ରୀତିର, ତା'ର ସେଇ ମୟୂଖୀ ଆଖିରେ
ବୁଣିଯାଏ ଅନାଦି ଗୀତର ବାସ୍ନା
ଦୁଇ ଆଶା, ଦୁଇ ସ୍ୱପ୍ନ ମିଶି ହୁଏ ଏକାକାର
ତା' ପାଦର ଅଳତାରେ ଛଂଦ ହେବା ବେଳେ
ତା' ବେଣୀର ଫୁଲ ପୁଣି ଖସି ଆସେ
ଏଇ ମୋର ଆଂଜୁଳାରେ
ନବୋଦିତ ବିଳାସୀ ଭାଷାରେ ।

ଏତେ ସୁଖ, ଏତେ ସ୍ୱପ୍ନ ସଂସାରରେ
ଝିନ୍ ଝିନ୍ ଝୁମ୍ ଝୁମ୍
ପ୍ରତି ଶବ୍ଦ ପ୍ରତିଟି ଶବ୍ଦର ଲାଗି ଝ ର ହୁଏ
ନାଲି ଓଠ, ନାଲି ନଖ, ନାଲି ନାଲି କରତଳ ତା'ର
ସବୁଥିରେ ଆଶାର ଉଜ୍ୱଳ କାଂନ୍ତି
ସିଏ ଯେବେ କହୁଥିଲା :
'ମୋ' ରାଣ ଜନ୍ମା ଭୁଲିବନି,
ବାହୁରେ ବାହୁକୁ ଛଂଦି
ଗାଲରେ ଆଂଗୁଠି ରଖି କହିଥିଲା,
ଜନ୍ମା ଭୁଲିବନି ।'

●

# ଚାଲିଯିବା ବେଳେ

ଜନ୍ମ ଇଚ୍ଛା ହୁଏ ନାହିଁ
ଚାଲିଯିବା ପାଇଁ
କ'ଣ ଗୋଟେ କେମିତି କେମିତି ଲାଗେ
କାହାଣୀର ଫୁଲଡୋର ପୁଣି ଟିକେ ବାଂଧି ରଖେ
ସ୍ୱପ୍ନ ଦେଖା ସରେ ନାହିଁ,
ସରିଯାଏ ନାହିଁ ।

ଛାଡ଼ିଯିବା ବେଳେ
ଆଖିରେ ଆଖିଏ କଥା
ପୁଣି ସେଠି ଏତେ ନୀରବତା
ଏତେ ସବୁ ପ୍ରଶ୍ନବାଚୀ ଖୋଜିବାର
ଚାହାଣୀରେ ଏତେ ସବୁ ସରୁ କାମ
ମଂଦିରର ଭାଷା ପରି ପବିତ୍ର ମମତା !

ଛାଡ଼ିଯିବା ବେଳେ
ଖୁବ୍ ବେଶି ନାଲି ନାଲି ଜଣାପଡ଼େ
ସୁଂଦରୀର ଭ୍ରୂଲତା
ନାଳାଂକୁ ଚଳିକା
ଚାଲିଯିବା ବେଳେ
ଘୁରେଇ ଭୁରେଇ ହେଇ ମନେପଡ଼େ
ଆଗପଛ କଥା
ଶକୁଂତଳା ଝୁରୁଥିଲା ଫୁଲର ମହକ ପାଇଁ
କେବେ ସବୁ ଖସି ଖସି ପଡ଼ିଥିଲା
ଆଂଗୁଠିରୁ ଗୋପୀଂକର କନକ ମୁଦ୍ରିକା ।

ଗ୍ରୁଡ଼ିଯିବା ବେଳେ
ଖୁବ୍ ବେଶି ଭଲ ଲାଗେ ଗପର ଅସର
ସମସ୍ତ ସନ୍ଧାଓ ନଜେ
ରାଧିକାର ଲୁହର ଯମୁନା

ଗ୍ରୁଡ଼ିଯିବା ବେଳେ ପୁଣି ଚକୋରର ନୀରବ ପ୍ରତୀକ୍ଷା
ସେହ୍ନପର ଗୋପାର ଅଂଧାର ରାତ
ସିଦ୍ଧାର୍ଥର ନୀରବ ଦୁଃଖର ଜ୍ୱାଳା
ସୀମାହୀନ ବନ୍ଧନର ଭାଷା ।
ସୁ ବନ୍ଧୁଷେ,
ଗ୍ରୁଡ଼ିଯିବା ବେଳେ
ଧୂସର ଖବର ଶୋଷ,
ରାତର କବିତା
ଏତେ ବେଶି ଆତ୍ମୁରତା, ଏତେ ବେଶି ନିଃସଂଗତା ?

ନଇଁ ପଡ଼େ ଦେହମନ, ନଇଁ ପଡ଼େ ମନରାନ୍ତ,
ମନ ଆଖିପତା ।



# ଆସନ୍ତା କି ଆଜି ସିଏ

ଆସନ୍ତା କି ଅଜି ସିଏ
ଥରେ ହେଲେ ବୁଲିଯିବା ପାଇଁ
କବିତାର ପ୍ଲଟ ପାଇଁ, ଅବଶିଷ୍ଟ ସ୍ୱପ୍ନ ପାଇଁ
ଏଇ ମୋର ଫାଙ୍କା ଫାଙ୍କା ଡ୍ରଇଁ ରୁମ୍ ପାଇଁ
ତା' ଦେହର ବସ୍ନା ଟିକେ
ଏଠିସେଠି, ଛଡ଼ିଯିବା ପାଇଁ ।

ଆସନ୍ତା କି ଅଜି ସିଏ
ଭୁଲିତାରେ ମୋ' କଥାର ଦିଅନ୍ତା ଉତ୍ତର
ପଚାରନ୍ତା ଭଲ ଅଛ, ଭଲ ସବୁ ?
ଅଳତା ଛିଟାରେ ସିଏ ଲେଖନ୍ତା ବା ଚମ୍ପୂ ଛନ୍ଦ
ଆବୃତ୍ତି କରନ୍ତା ହେଲେ ବସି ବସି
ଗୀତ ଗୋବିନ୍ଦର ଯେତେ ଲଳିତ ସଂଛଦ ।

ଆସନ୍ତା କି ଆଜି ସିଏ
ଥରେ ହେଲେ ଦେଖିଯିବା ପାଇଁ
ମୋ' ଗୃହର ଏକୁଟିଆ ଜଳବିନ୍ଦୁ ପରି
କେମିତି ନିଃସଙ୍ଗ ମୁହିଁ
ସୁଦୂର ଶ୍ୟାମଳ ଆଶା, ଅଳସ ଫୁଲର ହୋଇ
ସରମାଏ କପରି ବା କୋହରେ ବଭୁରି ?

ମୋ' ଗୃହରେ ଅସମ୍ଭବ ଷୟୁ ଷଣ୍ଡ
ଦାରୁଣ ଅଭାବ
ଫିକାପଡ଼େ ନବତ୍ତ୍ୱ ଭୋକନ ଲୋଭ
ଫାଙ୍କାପଡ଼େ ରବିବାର,

ଭୁବ.ଭୁବ ଢହଯାଏ ଥର,
ପ୍ରିଏ ଆଜ ଆସି ନାହାଁ ବୋଲ ।

ଆଜନାଇଁ ସେହ୍ୱ ରାତ
ଚୂନା ଚୂନା ତାରର କାହାଣୀ
ନାଇଁ ବଂଶୀ, ନାଇଁ ଗୀତ
ନାଇଁ ତାର ଶବୁକର ସଜ ଶଠି
ଫୋପା ଫୋପା ମହୁର ଆସକ୍ତି,
ଡ଼ଳେ ହେଲେ ସୁଖନାହାଁ କେଉଁଥିରେ
ତେଣୁ ମୁଇଁ, ଏକ ବିଂଦୁ ଅଶ୍ରୁପର
ନହାଭ ଏକାକ ।



# ଅପେକ୍ଷାରେ

ଆଗପରି ବଂଶୀରେ ରସୁଛି
ହାତଧରି ଟାଣିନିଏ ଜହ୍ନରାତି
କଦଂବ ବନକୁ
ମମତାର ଜୁଡ଼ୁ ବୁଡୁ ମହକରେ
ପବନ ନାଚୁଛି
ଆଗପରି, ସବୁ ଆଗପରି ।

ଅପେକ୍ଷାର ଜହ୍ନରାତି
ସାଉଁଟୁଛି ଅନୁକଂପା
ତୋଷ୍ଟଇ ନାହିଁ କି ହୋଇନାହିଁ
ଫେରି ଫେରି ଗୃହୁଁଛି ମୁଁ
କାଳେ ଭୁଇ ଆସୁଜିବୁ
ଖେଳା ଲେଳା ଖଂଜନାକ୍ଷୀ
ଖୋଜିଖୋଜି ଜହ୍ନର ଚେତନା
କବା ଫୁଲର ବଛଣା

ନଈକୂଳର ସବୁଫୁଲରେ
ଛାଡ଼ିଦେଇ ଯାଇଛୁ, ତୋ ଭଳି ପାଇବା
ଆଉ ତୁ ଚାଲିଯାଇଛୁ, ଢ଼େର୍ ଦୂରକୁ
ଯୋଜନ ଯୋଜନ ଦୂର
ଏବେ ପ୍ରଚଂଡ କ୍ଷତିରେ
ଝାଉଁଳି ପଡ଼ୁଛି ମୋର
ନିରଳସ ଚଂଦ୍ରମୁଖ
କେଉଁ ପବନର ଆଶ୍ୱାସନା ଆଉ

ପୋଛି ନେବ କହ
ନିଜଝାଳ, ନିଜଲୁହ
କାହାର ପରେଉକାନ ପୋଛି ନେବ
ଏ ସମସ୍ତ ପ୍ରତୀକ୍ଷାର ଉତ୍ତେଜନା
ଖୋଲି ଆଖି ଭିଜେଇ ତୋ ଆସିବା ବାଟକୁ ଗୃହେଁ
ଚାହିଁ ରହେ ।

ଅଧରାତିରେ ସ୍ୱପ୍ନ ଦେଖେ : ଦୁଃସ୍ୱପ୍ନ
ତୁ ମିଳେଇ ଯାଉଛୁ ଜହ୍ନରେ, ଜୋଛନାରେ
ନିଦଭାଂଗିଯାଏ, ଦେଖେ କେହି ନାହିଁ
କିଏ ବୁଝେ ମାନ ଅଭିମାନ
କିଏ ବୁଝେ ଚାଂପୂର ଜ୍ୱଳନ
କିଏ ବୁଝେ ଗୁଇଟ୍ଠଇ ଜହ୍ନରାତି
କିଏ ବୁଝେ ଭିଜାଭିଜା ମଉଳିବ
ଗୋଟି ଗୋଟି କଦାଂବର ମନ ?

ନିଜ କାନରେ ଆଉଜି ପଡୁଛି ନିଜେ
ତେଜି ଦେଉଛି ନଭେଇ ଦେଉଛି ମୋତେ
ଭରି ଦେଉଛି, ଉଜାଡ଼ି କରୁଛି
ଆଉ ତୋ ଅଭାବର ଅନୁଭୂତି
ଧୋଇ ଦେଉଛି ବନ ଉପବନ
ପବନ ନଇଁ ଦେଉଛି ଫୁଲଡ଼ାଳ
ଆକାଶରେ ଜହ୍ନ ଚଢ଼ୁଛି ସୁନ୍ଦର
ହେଲେ ତୁ ନାହୁଁ
ଭୀରୁଭୀରୁ ଚାହାଣୀରେ ଫେରଚାହିଁ କହୁନୁ :
କୁରୁବକ କଂଠା କେଉଁ
ଫାଙ୍କଲ୍ଠାଏ ମ !



# ନୀଳଭୁଇଁ

ବେଳେବେଳେ ଏମିତି ହୁଏ
ଗୀତଟିଏ ଲଳିତ ଓଠରୁ ଝରି
ଫିକାଜହ୍ନ ଆଲୁଅରେ ନଈଟିକୁ ଛୁଏଁ
ଚାହୁଁ ଚାହୁଁ ନିମିଷେକେ ଫୁଲଭର୍ତ୍ତି ନୀରବତା
ଓଦା ହୋଇଯାଏ ।

ଫୁଲଫକା ଭୁଇଁଟିଏ : ସେ ଭୁଇଁରେ
ଗୀତଟିଏ ଝରିଗଲେ, ଶୁଭିଯାଏ ହାହାକାର
ନୀଳଘାସ ଯନ୍ତ୍ରଣାରେ ପୁରୁରବା ଲୁହ ଢଳେ ଛଳଛଳ
ନାର୍ସିସସ୍ ସ୍ୱପ୍ନଟିଏ ଫେରିଆସେ ଆକାଶକୁ
ସୁରଭିତ ନୂଆସ୍ୱରଟିଏ ପୁଣି ଫେରିଯାଏ ସଂଗୀତକୁ
ଲୁହରେ ଲୁହରେ ଏଇ ଆଖି ଓଠ ଭିଜିଯାଏ
ମହକଟେ ମହକୁ ମହକୁ, ମଉଳି ମଉଳି କଳାପଡ଼ିଆସେ

ସଂଗୀତର ପ୍ରତିଶ୍ରୁତି କାହିଁ ? ଛବିର କୋଣାର୍କ କାହିଁ ?
ସୁରଭିତ ଶେଯଟିଏ କାହିଁ ?
ଲୁହ ସବୁ ଝରିଝରି ଝରିଗଲେ
ଗୀତର ଅଳସ କାହିଁ
ବହିବହି ଯାଉଥିବା ବିଶ୍ୱାସର ନଈ
ବିରହରେ ଛଳଛଳ ଢଳେ ।

ପ୍ରୀତିର ଲୁହ ଟୋପିଏ ଝରିପଡ଼େ
ଝରିପଡ଼େ ଲୁହର କଦଂବ
ନୀଳନଈ ଫୁଲଫୁଲି ଉଠେ
ଆକାଶରେ ରଂଗ ଲାଗେ

ଦୁଃଖସବୁ ଆକାଶର କୁଂଭପକା ମେଘପରି
ଧାଡ଼ିଧାଡ଼ି କବିତା ଚାଲିଛି ।

ଜହ୍ନର ଆଲୁଅ ଛୋପେ ଏକୁଟିଆ
ଏକୁଟିଆ ନକ୍ଷତ୍ରଟା, ଏକୁଟିଆ ଶାମୁକା ଆଖିର ଲୁହ
ଏକୁଟିଆ ଥୁଂଟାଡାଳ, ଏକୁଟିଆ ନୀଳଜହ୍ନ
ଘରି ଘରି ଏକୁଟିଆ ଦଣେ
ଆକାଶରେ ମେଘଭାସେ
ନୀଳନୀଳ ପବନରେ ଝରକାଟେ ଖୋଲିଯାଏ
ଗୀତର ମହକବାରି ଦରଦର ଫୁଲ ଝରିପଡ଼େ ।

ମୁଁ ଜମ୍ମା ଜାଣେନା
କାହିଁକି ସେ ଗୀତ ସବୁ ମନେ ପଡ଼ିଯାଏ
କାହିଁକି ବା ଦେହ ମନ ଭିଜି ଉଠେ ଲଳିତ ଲୋଭରେ
ମୁଁ ଜାଣେନା : କେଉଁପରି ନୀଳ ଆଖି, ନୀଳସ୍ମୃତି
ମମତାରେ ଓଦା ହୋଇଉଠେ ?
ଖୋଜି ତ ନଥିଲି ଏମିତି ଗୀତଟେ କେବେ
ଲୋଭିତ ନଥିଲି ଏମିତି ରାତିଟେ କେବେ
କିଏ ଆଜି ପାଗଳ କରିଲା ପୁଣି ଏତେଦିନ ପରେ ?
କାହାସ୍ମୃତି ଏ ଲୁହରେ ଡଙ୍ଗାହୋଇ ଭାସେ
କାହାସ୍ମୃତି ମୋ ଦେହରେ ଫୁଲ ହୋଇ ଫୁଟେ
କାହାପାଇଁ ପକେଟର ଫୁଲ
କାହାପାଇଁ ପକେଟର ଜହ୍ନରାତି ସ୍ମୃତି
ନକ୍ଷର ସେ ଦୂଲକୂଳ : କାହାପାଇଁ ଅପେକ୍ଷାର ରାତି ?

ସବୁଗୀତ ଏକାପରି : ସବୁଦୁଃଖ ଏକାଏକା
ଲୁହ ହୋଇ ଝରୁଥିବା ନକ୍ଷତ୍ର
ଓଦାଓଦା ପବନରେ ଥରୁଥିବା ଛାତିର କୋଠରୀ

କଲମରୁ ଝରୁଥିବା କାଳି
ଭାବାକୁଳ ପବନରେ ଉଡ଼ୁଥିବା
ମୋ ଧୋତିର କୁଞ୍ଚକାନି, ସବୁ ଏକାପରି ।
ସବୁନୀଳ, ନୀଳସବୁ ସ୍ୱପ୍ନର କାକଳି ।
ସବୁନୀଳ ଏକାପରି :
ନୀଳସବୁ ଜୋଛନାର ରାତି
ନୀଳସବୁ ଜହ୍ନରାତି
ନୀଳସବୁ ବରଷର ପୁଲକିତ ଆଖି ।

ମୁଁ ଜାଣେନି ନଈକୂଳେ କେଉଁକାଳେ ଲାଜଥାଏ
କାଳଟିକେ କେମିତିକା ଲାଗିଯାଏ
ନଈପଠା ସବୁଜ ଶାଢ଼ୀରେ
ସଂପର୍କର ନୀଳତୁଠଟିରେ ଅପବାଦ ରହେ
କମ୍ପା କା' ପାଇଁ ନୀଳ ଆକାଶର ଜହ୍ନ ଉଇଁ ଆସେ
କାହାପାଇଁ ନୀଳନଈ ଜହ୍ନମୟୂ ହସେ ?

ମୁଁ ଇଚ୍ଛାର ପୁରୁଷ । ସଗୀତରେ ଗାଉଥାଏ
ଛନଛନ ପତରରେ, ମହମହ ସୁବାସରେ
ବସଂତ ଆସିଛି । ନୀଳଘାସ କଂପିତ ଓଠରେ
ସଗୀତର ମହୁ । ନଉକା ଗୁଡ଼ିରେ ଜହ୍ନ
ନାଉରୀ ଓଠରେ ଚଂପୁ
ପାପନାହିଁ, ପୁଣ୍ୟ ନାହିଁ
ଚଳଚଳ ଲୁହବନ୍ଦୁ, ଝଲମଲ ନୀଳତୁଠ
ଜହ୍ନରୁ ଝରୁଛି ଲୁହ, ଜହ୍ନରୁ ଝରୁଛି ମହୁ
ଗୀତରୁ ଝରୁଛି ଲୁହ, ଗୀତରୁ ଝରୁଛି ମହୁ
ପବନରେ ପରପର ମୁଁ ଉଡୁଛି ଓ ଖସୁଅଛି
ଉଡ଼ିଉଡ଼ି ଚାହୁଁଛି ନଈକୁ

ଗୀତରେ ଶୁଭୁଛି :
ନଷ୍ଟକାହିଁ , ଭୁଠ କାହିଁ
ମାଟିକାହିଁ , ପାଦ କାହିଁ କାହିଁ
ମୁଁ ଗାଉଛି ସେମ୍ନ ଗୀତ ଆଜ
ମାଟିରେ ବା ପାଦ ମୋର ନାହିଁ



# ଶିଳାଲିପି

ତୋ' ପାଇଁ ଲେଖିବ ନାଇଁ
କଦଂବ ବନର ଗୀତ
ତୋ ପାଇଁ ତୋଳିବି ନାହିଁ
ଆଜିକେବେ ନିଂଦାର ନଅର
ଛୁଇଁବନି ତୋ ବୀଣାର ତାର ଆଜି
ବାଂଧିବନି ତୋ ପାଦରେ ପ୍ରୀତିର ଘୁଂଗୁର

ତୋ ପାଇଁ ବୁଲିବନାଇଁ, ଆଜି କେବେ
ଅମାନିଆ ପବନର ମନ ନେଇ
ଛୁଇଁବନି ତୋ ଚିବୁକ
ଛୁଇଁବନି ତୋ ଶାଢ଼ୀର ସବୁଜ ଅକ୍ଷର
ଭୁଲିଯିବ ତୋ'ଲ୍‌ଗି ଯମୁନାର ନୀଳପାଣି,
ପାଣିକାହ୍ନ, ରୁଣୁଝୁଣୁ ଚୁଡ଼ୀର ସଂବାଦ ।

ଆଜିକେବେ ଅଧରରେ ବଂଶୀ ମୁହାଁ ଚୁମିବନି
ଆମ କଥା ଆଜି କେହି ଏଠିସେଠି ଗପିବେନି
ଚିଠିର ଅପେକ୍ଷା ଆଜି ରହିବନି
ହୃଦୟରେ ତାଲ୍‌ପଡ଼ି ଲହିଯିବ ଫୁଲର ପଲଂକ
ଭୁଲିଯିବ ତୋ'ଲ୍‌ଗି, ଫଗୁଣର ବଲବାଠ
କେଉକେଉ ଜୋଛନାର ଶୋଷ ଓ ମହକ ।

ଆଜିକେବେ ଖୋଜିବନି ତୋ ଆଖିରେ
ଉଷୁମୁ ବସାର ସ୍ୱପ୍ନ
ଅବା କେବେ, ଅନୁପମ ଖେତର ଭୂଗୋଳ
ମୋ ଶବ୍ଦର କୋଇଲିକୁ ପଠିଆଇ ଦେବ ନାହିଁ

ଚୁମିବାକୁ ତୋ' ଓଠର ମହୁ ଓ ବଉଳ
ଫୁଲଟିଏ ଫିଙ୍ଗିଦେଇ, ଆଉ କେବେ ଦେଖିବନି
ଫୁଲେଇ ନଣ୍ଠର ଛଇ
ଆକାଶର ସବୁଜ ମେଘକୁ ଚାହିଁ
କେବେ ଆଉ ଭୁଲିବନି ବାଟ ।

ମଉଳିଛି ଫୁଲପରି କଅଁଳ ବିଶ୍ୱାସ ମୋର
ଚିରା କାଗଜର ସ୍ମୃତି
ଅବସନ୍ନ ମନନେଇ, ପବନରେ ଥରୁଅଛି
ତୁ କାହିଁ ବସିଥିବୁ ଏତେବେଳେ
କିଳି ଦେଇ କପଟର ଚିହ୍ନିତ କବାଟ !

ଝରକା ପାଖରେ ବସି
ଆଉ କେବେ ନିରୋଳାରେ
ମୋ କଥା ଭାବିବୁନି
ଅଚାନକ ଭେଟ ହେଲେ
ବାଟ ଭାଙ୍ଗି ଚାଲିଯିବୁ
ପଦୁଟିଏ କଥାବି ହେବୁନି ।

ଭରିଦେ' ଏତେବେଳେ
ମୋ ଆଖିରେ ଫୋଷ ଫୋଷ ନିଦ
ଶୋଇପଡୁ ଏସ୍ମୃତିରେ ଶିଳାଲିପି, କଳାଜହ୍ନ
ଉପେକ୍ଷିତ ସବୁଜ ଜଙ୍ଗଲ
ନିଶବଦେ ଶୋଇପଡୁ, ଫଗୁଣର ଛଦ୍ମକ୍ଷତ
ଛିନ୍ନଭିନ୍ନ ଜହ୍ନରାତି
ଦଗଦଗ କଳଙ୍କର ଚାରୁ ଚିତ୍ରପଟ ।



# ଏ ଘୋର ବରଷାକାଳେ

ଝିପିଟିପି ନୀଳ ବରଷାରେ ସଜନୀ,
ମନ୍ଥକୁଟ ଘରଦ୍ୱାର, ତୋଟାମାଳ
ମନ୍ଥକୁଟ କେଶବାସ, ବଛଟାଘଟର
ମନ୍ଥକୁଟ ଗଛବୃକ୍ଷ ଗୁରଆଡ଼
ଏତେବେଳେ ଆଖି କାଆଁ ଏତେ ଛଳଛଳ ?

ଅଦ୍ଭୁତ ନୀଳଝଡ଼
ମନ୍ଥମନ୍ଥ ଆଷାଢ଼, ଶ୍ରାବଣ
ପାଦଲଗେ ଅଶକତ
ଭର ଭର ଲାଗେ ସବୁ ପିଂଧିଥିବା ଅଙ୍ଗ ଅଳଂକାର
ସାପପରି ଲାଗେ ନିଜ ଗଳାହାର, ପାଉଁଜି କଙ୍କଣ
ବାରିହୁଏ ନାହିଁ ନିଜ ଦେହ ମୁହଁ
ଚଉଦିଗ ଲାଗେ ଖାଲି ଅଂଧାର ଅଂଧାର, ।

ଚାରିଆଡ଼େ ଆକାଶରୁ ବର୍ଷା ଧାରଧାର
ଯୁଆଡ଼େ ଖୋଲିଲେ ଆଖି ଲୁହପରି ଲାଗେ ଜରଜର
ଯୁଆଡ଼େ ଡେରିଲେ କାନ
ଟୁପ୍‌ଟାପ୍ କଦଂବ କାଂଡର ବର୍ଷା
ଶେଷହୀନ ବଇଁଶୀର ସୁର ।

ବିରହ ବରଷାକାଳ ସଜନୀରେ
ଯେତିକି ସୁଂଦର ଧରା, ସେତିକି ବିକଳ
ରେ ସଜନୀ, କେଡ଼େ ଆଡଂବର ଦୃଶ୍ୟ :
ଘରେତ ଆକାଶ ନାହିଁ, କେଉଁପରି ମାରଇ ବିଜୁଳି

ଘୋର ନୀଳ ବରଷାରେ ଦେହ ମୁହଁ ଆଖି କାନ
ଯାଉଅଛି ଜଳି
ବରଷା ଓ ପବନରେ ଭାଂଗିପଡ଼େ ପ୍ରୀତିର ପାଚେରୀ
ମଲ୍ଲୀଫୁଲ ଗଢ଼ା ଦେହ
ବିରହରେ ପଡ଼ୁଛି ମଉଳି ।

ଏ ଘୋର ବରଷାକାଳେ
କଉଁ ରାଜ ପାରିବ ତା' ମନକୁ ବୁଝାଇ
ଅନମନା ହାତପାଦ, ବେଳୁବେଳ ଅଧିର ଲୁଚଇ
ଝରୁଛି କଦଂବ ଫୁଲ, ଝରୁଛି ଆକାଶ
ସଜନୀରେ, ଫିଟିପଡ଼େ କେଶବାସ
ଫିଟିପଡ଼େ କେଶ୍‌କେଶ ଦେହମନ,
ଲୁହର କବାଟ ।



# ବସନ୍ତ ଋତୁ

ଯେହେତୁ ବସଂତ ଆସିଛି
ଖସିଯାଏ ମୋର ଦେହର ବକଳ
ଧୂସର ଶାଖାରେ ବିରହୀ ଚଢ଼େଇର ଶବ୍ଦ କେତେ ହୃଦୟ ଏ
ଅସ୍ଥିରତାର ବାସ୍ନାରେ ମୋ ଦେହରେ ଅଶ୍ୱବର କ୍ଷତ
ବାରଂବାର ଉଡ଼ିବାକୁ ଚେଷ୍ଟାକରି, ଉଡ଼ିପାରେ ନାହିଁ ।

ମୋ ହୃଦୟେଶ୍ୱରୀ ପାଇଁ ସଂବାଦଟିଏ ଘେନ ଯାଅରେ ବସଂତ
ତୋତେ ତା' ଠିକଣା ଦେବି
ଏ ଆବେଗର ଶବ୍ଦ ପୁଂଜକୁ ଚିଠିକରି ପକେଇଲି
ଝରକା ଫାଂକରେ ।

ସେ ହୁଏତ ଶୋଇପଡ଼ିଥିବ ନିଝୁମ ରାତିରେ
ତୋ ଅଦୃଶ୍ୟ କଥାରେ ଚୁପ୍ ଚୁପ୍ କହିବୁ
ଚଂନ୍ଦ୍ରମାକୁ ଚିଠି ପଠେଇଛି
ଆଜି ବସନ୍ତ ଚଂଦାରେ ଏକ କବିତା ଲେଖିଛି ।

ଚେତ ଚଉରୀ ଚିଠି ପଢ଼ିବ ଆବେଗରେ
ଆମ୍ଭାକୁ ଓହ୍ଲେଇ ଆସିବ ଶୋଷ ଆଜି ସୁବାସର ଋତୁ
ବିରହର ଭବିତୁର ମେଘ ଘୋଟିଯିବ ଆକାଶରେ
ଘୋ' ଘୋ' ସୁଉ ସୁଉ ଶବ୍ଦମାନ
ସୁଅ ହୋଇ ବହିଯିବ ପୃଥିବୀ ଉପରେ ।

ଆଜି ବି ଦେଖି ଆସିବୁ
କେମିତି ବିପର୍ଯ୍ୟସ୍ତ ତୀରରେ
ତାର ଦହନର କୋଳାହଳ ଚେଇଁଉଠେ ବାରଂବାର

ଅସଂଯତ ଶାଢୀର ଦୁଃଖ ସବୁ କେମିତି ଅଶ୍ରୁଳ ?
ଗ୍ରବନା- ବଛେଇ ହୋଇପଡ଼ିଥିବ ଅକାଳ ବର୍ଷାପରି
କ୍ଷୁଧା- ଲଂବିଥିବ ଘରଠୁଁ ଭୁବନେଶ୍ୱର
ଅସ୍ଥିରତା- ଆଖିପତାରେ ଛଂଦି ହେଉଥିବ ଉଦ୍ଦାମ
ଅନିଦ୍ରାରେ
ବ୍ୟାକୁଳତା- ଅତି ବେଶୀ ସଂକୁଳ ହୋଇଥିବ ନିର୍ମମ
ନିଷ୍ଠୁରତାରେ ।

ଏମିତି ଶୁଭ୍ର ସଂବାଦମାନ ଆଣିବୁରେ ବସଂତ
ମୋର ଏଇ ଛନ୍ନଛାଡ଼ ମନ ଅରଣ୍ୟକୁ
ଗହଳ ଅଭିମାନକୁ ତାର ଫିଙ୍ଗାଇ ଦେବୁ
ମୋ ଗୁଣ୍ଠିର ଚଟାଣ ଉପରେ
ସ୍ୱପ୍ନାତୁର କବର ଇଚ୍ଛା ଅସଂଲଗ୍ନ ସବୁ
ବକ୍ଷିପ୍ତ ବଂଧୁର ଇଏ ସଜଡ଼ା ଫଳାପ
ନିଷ୍ପାପ ଆଖିପରି, ଆଉ ଜହ୍ନରାତିପରି
ସାହାଖାଲ ଦୀର୍ଘ ସରଳାର୍ଥ ।

ଏଇମିତି ଖାଲରେ ବସଂତ
ପାଗଳ ପବନ ହେବାକୁ ଇଚ୍ଛାହୁଏ
ନିଦ୍ରା ଓ ଆହାରମାନ ତ୍ୟାଗକରି
ଜଙ୍ଗଲରେ ବୁଲିବାକୁ ଭାରି ଭଲଲାଗେ ।



# ଫୁଲ

ଚହଲି ଯାଉଛି ଢେଉ
ଚହଲି ଯାଉଚି ରାତି
ସୂଅରେ ସୂଅରେ ସବୁ ପ୍ରତିଶ୍ରୁତି
ଚୂନି ଚୂନି ଆଲୁଅର ଛିଟି ।

ଢେଉରେ ଢେଉରେ ସବୁ
ସୁବାସିତ କଳ୍ପନାର ସ୍ମୃତି
ଫୁଲ ପାଖୁଡ଼ାରେ ଦୁଶେ
ଟୋପି ଟୋପି ଜହ୍ନରଙ୍ଗ
ସ୍ନେହ ଆଉ ସୋହାଗର ଦେହମନ
ଶୂନ୍ୟରେ ଶୂନ୍ୟରେ ଆହା
ଘୁଏଁ ଘୁଏଁ ଲେଟିପଡ଼ୁଅଛି ।

ତାରରେ ତାରରେ ଆହା
ଏତେ ସ୍ୱପ୍ନ, ଏତେ ମନ,
ଫୁଲରେ ଫୁଲରେ ଆହା
ଏତେ ଗୀତ, ଏତେ ବାସ୍ନା
କାହୁଁ ଏ ଅଇଲ୍
କଉଁ ଦଇବ ଏହା ଭିଆଇଲ୍’
ବୁଜିଯାଉଚି ବଉଦର ଆଖି
ଫୁଲକୁଇ ଚୁହିଁ ଚୁହିଁ
ବେଳେବେଳେ ଅପେକ୍ଷା କରୁଚି
ଗୋଟେ ଗୋଟେ ସବୁଜ ମିନତି ।

ପ୍ରେମିକ ଲେଖୁଛି ଚିଠି
ବାତାୟନ ଖୋଲିଦେଇ
କବିଟିଏ ଆନମନା ହୋଇ
ସେତେବେଳକୁ ବସିଛି ଯେ ବସିଛି
କବିତା ଖାତାରେ ତାର କଲମଟି
ଧୁଏଁ ଧୁଏଁ ଅଟକି ଯାଇଛି ।

ଫୁଲ ଫୁଟିବାର ଦେଖି
ଘଡ଼ିଏ ବି ଅଟକି ରହିବ
ସମୟର ମନ,
ଘଡ଼ିଏ ବି ଅଟକି ରହିବ
ସିଦ୍ଧାର୍ଥର ବିରାଗୀ ନୟନ
ଫୁଲପାଇଁ ।
ଖାସ ଫୁଲପାଇଁ ।



# ନିଦନିଦ ଲାଗୁଚି

ରଂଗୀନ ଓ ସୁଗଂଧ ଅଂଧାର ଏଠି
ବୁଜିଆସେ ଅଳସ ଆଖିକି
ତମ କଥା ଭାବି ଭାବି
ବିଛଣାରେ ଶୋଇ ଶୋଇ
ଗଜଲ୍ ଶୁଣୁଚି ।

ଏତିକି ବୁଝିଚି :
ତମେ ଏକ ନୀରବତା
ଯାହାର ପୁଷ୍ପିତ ସ୍ମୃତି ଭିଡ଼ ଅଛି ଚିରକାଳ
ମୋ ସ୍ୱପ୍ନର ନିଦନିଦ ଅନୁଶୋଚନାରେ
ତମେ ଏକ ଗୋଲାପୀ ନିଆଁର ଶିଖା
ଜଳିଜଳି ମଉଳିଚି
ମୋ ସ୍ମୃତିର ମୁହଁ ଲୁଚା ମେଘ ଅଂଧାରରେ ।

ତମେ ଏକ ରୂପସୀ ସବୁଜ ଶବ୍ଦ
ମୋ ଆଖିର ଛାଇଲଗା ଭାଟିପତା ତଳେ
ତମେ ଆଜି ଅତରର ବାସ୍ନା ଠୋପେ
ମୋ ପଂଜାବୀ ଛାତି ପକେଟରେ ।

ତମେ ଆଜି ମୋ ମନର ନକ୍ଷତ୍ରଭୂଠ ବାଲି ଶେଯେ
ହଜିଥିବା ବିମନା ନୂପୁର
ନରମ ମରମ ତଳେ ଏବେବି ରହିଛି ଲାଖି
ତମହସ, ତମର ନିଃଶ୍ୱାସ

ଧୂପପର ସ୍ନିଗ୍ଧ ଲାଜ, ମୃଦୁ ମୃଦୁ ବଚନ ଓ
ଛୁଇଁ ନଛୁଇଁବାପର ତମମନ, ତମହାତ
ତମ ଶାଢ଼ୀ, ତମ ନୀଳ କେଶ ।

ସପନରେ ଭାସି ଉଠେ
ତମର ସେ ଫୁଲଝରା ନୀଳ ବେଣୀ
ରଂଗୀନ ଓଠ ଓ ଭୂରୁ
ନୀଳପରୀ ତରଳ ଗୃହାଣୀ
ବୁଜିଆସେ ଧିରେ ଧିରେ
ଆଖିର ନୀଳ ପାଖୁଡ଼ା
କମନୀୟ ନୀଳ ରାତ୍ରି
ଅପାଶୋରା ପ୍ରୀତିର କାହାଣୀ ।



# ଚଖାଳ

ଭାବିଥିଲି ତମେ ଆଉ
ଛାଡ଼ି ଦେବ ନାହିଁ
ମିଛ ମିଛ ନଈଟିଏ ହୋଇ ଆଙ୍କି
ସପନରେ ବନ୍ଧାଯିବ ନାହିଁ
ଝରକେ ଏକାକୀ ବସି
କେତେଥର ଭାବିଛି ମୁଁ
ଲେଖିଲି କବିତା ସିନା ତମପାଇଁ
ଶୁଣାଇଲି ଲୁହର ଗଜଲ କେତେ
ହେଲେ, ତମ ମନ କବିତାକୁ
ଛୁଇଁ ପାରିଲାନି ।

ତମେ ଗଲ ଭାଙ୍ଗି ଦେଇ
କାଗଜର ଘରଟିଏ
ପଛରେ ପକାଇଗଲ
ଗଳ୍ପର ଫୁଲ୍‌ବଗିଚା
ମେଘ ଓ ମୟୂର ।
ତମେ ଗଲ ଛୁଇଁଦେଇ
ପବନରେ ଛପିଛପି
କବିତାର ଗୋଲାପି ଅଧର :
ତମେ ଗଲ ଛୁଇଁଦେଇ
ଫିକାଫିକା ଜହ୍ନ ଆଉ ଜୋଛନାରେ
ଝିରି ଝିରି ମଳୟ ପବନ
ସପନର ମେଘ ହୋଇ

ଆକାଶରେ ଘସିଗଲ
ଛୁଇଁଲନ ଥରୁଟିଏ
ମାଟିର ଦର୍ପଣ ।

କେମିତି ଲେଖିବି ଆଜ ଏତେକଥା
ଏ ସବୁ ଚିଠିରେ
କେମିତି ଭୁଲିବି ଆଜ
ତମେ ଯବେ ବାଂଧିଥିଲ ମନ ମୋର
ସୁନା ଶିକୁଳିରେ ।
ତମେ ତ ଯାଇଚ ବୁଣି ଗୁଣପାଖେ
ଶୂନ୍ୟତାର ସ୍ୱର
ତମକୁ ମୁଁ ପାଇଥିଲି ଭଲଯବେ
ସ୍ମୃତି ତେଣୁ ଏତେ ଆପଣାର ।



# ଅଭିସାର

ଫଗୁଣରେ ଫୁଲପକା ଜହ୍ନରାତି
ଅଦୂରରେ ମଉଳିଗଲାଣି, ପ୍ରିୟତମା
ଆକାଶଟା ସାରା ବୁଣି ହୋଇ ପଡ଼ିଲାଣି
ଗୋଟି ଗୋଟି ମେଘର ପାଖୁଡ଼ା
ଅନେକ ଅକୁହା କଥା କହିବାର ଥିଲା
ନିର୍ଜନ ଏ ନିଃଶବ୍ଦ ରାତିରେ
ଅନେକ କବିତା ତୁମ ଅଧରରେ
ଲେଖିବାର ଥିଲା ।।

ଶୋଇ କି ପଡିଲ ସତେ ଏ ଜହ୍ନ ରାତିରେ
କହିଥିଲ ଆସିବାକୁ
ସପନର ଫୁଲ ତୋଳି ଯିବାବୋଲି
ପାହାଡ଼ର ସେ କଡ଼ରେ ଜହ୍ନ ବୁଡ଼ିଗଲେ
କହିଥିଲ ଆସିବାକୁ
ହାଟବାଟ କୋଳାହଳ ନିଭିଯିବା ପରେ
ତାଳ ଓ ତମାଳମାନ ଅଂଧାରରେ
ହଜିଯିବା ପରେ ।

ଅଂଧାରରେ ଗାଁ ଦାଣ୍ଡ ବୁଡ଼ିଗଲେ
କହିଥିଲ ଆସିବାକୁ, ଛପି ଛପି
ଖୋଲିଦେଇ ପାଦର ନୂପୁର
କହିଥିଲ ଆସିବାକୁ
ପଡ଼ୋଶୀଂକ ଘରେ ସବୁ ପଡ଼ିଗଲେ
ଚଂଦ୍ରାଭୁର ଝରକା କବାଟ ।

ଏଡ଼କି ମିନ୍ତେଇ ତୁମେ
ନିଦରେ କି ଶୋଇଗଲ
କହିଥିଲ ଆସିବାକୁ
ମନୁଁ ସତେ ପାଶୋରିବା ଦେଲ ?

ପବନର ଥିର ଥିର ଶବଦରେ
ଭାବୁଚି ମୁଁ ; ତୁମେ ଆସୁଚକି ?
ପତରର ଖସ୍ ଖସ୍ ଶବଦରେ
ଭାବୁଚି ମୁଁ : ତୁମେ ଆସୁଚକି ?
କାଳେ ତୁମେ ଆସୁଚକି
ଆଶଂକାର ପାଦଥାପି ଧିରେ ଧିରେ
ଶୁଖିଲ୍ ପତରେ
କାଳେ ତୁମେ ଆସୁଚକି
ଚାରିଆଡ଼େ ଚାହିଁ ଚାହିଁ
ଅଳସ ଓ ଅଲ୍ସ ନିଦରେ !

ପ୍ରିୟତମା, ଜହ୍ନହୀନ ଏ ଆକାଶ
ଶୁନ୍‌ଶାନ୍ ଉଦାସ ପହର
ବଉଦର ଫାଂକେ ଫାଂକେ
ତାରାଂକର ଲୁଚକାଳି ଖେଳ
ପ୍ରତୀକ୍ଷାର ନକ୍ଷତ୍ରକୁଳେ
ନିଃଶବ୍ଦ ଚଂପକେ ପ୍ରାୟ
ଏ ରାତିରେ ଏକାକିନି
କେଉଁପରି ନିଶ୍ଚିଂତେ ରହିଲ ?



# ଅନ୍ୟ ଏକ ସ୍ୱପ୍ନ

ହୁଏତ ବା ମୋ କବିତା ପତ୍ରୁ ପତ୍ରୁ
ନିଦ ହୋଇଯାଇଥିବ
ସ୍ଥିର ହୋଇ ଶୋଇପଡ଼ିଥିବ
ଝରକାରେ ପଉଷ ପବନ ପରି
ଗୁପିଦେଇ ଯାଉଥିବ
ପରିଚ୍ଛନ୍ନ ରାତିର ବିଶ୍ୱାସ
ଘରସାରା ଢେଉଭଙ୍ଗି ବୁଲୁଥିବ
ଜହ୍ନର ମହକ
ଆକାଶରେ ତାରା ସବୁ ଫୁଟିଥିବେ
ଗୋଟି ଗୋଟି ନିଃସଂଗ କାମନା ହୋଇ
ସାଲଂଦୀ ବି ଧସୁଥିବ
ସବୁକଳା ଜଙ୍ଗଲ ଗାରଟେ ପରି
ଜହ୍ନର ନିଶ୍ୱାସ ଯାଇ ଛୁଇଁଥିବ
ଚଂପୁର ପାପୁଲି ।

ବଗିଚାର ଫୁଲେ ଫୁଲେ ପଡ଼ିଥିବ
ଠିକ ଠିକ ବାସ୍ନାର ଚହଲ
ପୂର୍ବପରି ଥିବ ସବୁ ଲତାଙ୍କର
ପାଦରେ ନୂପୁର ।
ତୁମେ ଶୋଇପଡ଼ିଥିବ
କିଛି ବି ଜଣା ନଥିବ
ଏ ସବୁର ନିର୍ଲୋଳା ରାଗିଣୀ
ଚୁପ୍ ହୋଇ ପଡ଼ିଥିବ, ଶୀତର ଶୀତଳ ଛାଇ
ତୁନି ତୁନି ଗୀତରେ ବିଭୋର

ତୁମେ ସ୍ୱପ୍ନ ଦେଖୁଥିବ ସେତେବେଳେ
ମୁଁ ତୁମକୁ ଖୋଜି ଖୋଜି ଯାଉଅଛି
ଝିଁଝିର ଶବ୍ଦରେ

ପାଦ ମୋ ଯାଉଛି ଛଂଦ
ନୀଳ ଘାସ ଜହ୍ନ ଆଲୁଅରେ
ମୋଅର ଯିବାର ବାଟ ଚୁମିଅଛି
ତମଘର କାନ୍ଥ ଆଉ ଝରକା କବାଟ
ମାଗିବାକୁ ଯାଉଅଛି ତୁମର ଆଖିର ନିଦ
ତମର ଦେହର ତାତି, ଆଉ ତୁମ କବରୀର
ଭୀରୁ ଭୀରୁ ଫୁଲର ସୁବାସ ।

ତାହାପରେ ଜଣାଯିବ
ଜହ୍ନ ନଇ ଯିବା ବେଳେ
ବଂଶୀଟିଏ ଝୁରିଝୁରି ଯାଉଅଛି
ଚୁପି ଚୁପି ତୁମକୁ ଡାକୁଛି
ଗୁହୁଁ ଗୁହୁଁ ଗୁଉଁକନା ନିଦ ଯିବ ଭାଂଗି ଭାଂଗି
ଉଠିବ ବା ଜୋର୍ କରି ରେଜେଇ ଫୋପାଡ଼ି
ଦେଖିବଣି ସବୁଠାରେ ସେତେବେଳେ
ଯୌବନର କଅଁଳ ବିଳାସ
ସବୁ କିବା ଅଳସ ଅଳସ
ସ୍ୱପ୍ନ ଭୁଲ, ଭୁଲ ସ୍ୱପ୍ନ
ତାହାପରେ ଅଂଧାରର ଅବଶୋଷ
ଟିକେ ଟିକେ ରୁଣ୍ଣୁଝୁଣ୍ଣୁ ଚୁଡ଼ୀର କୋରସ୍
ନିଦ ଆଉ ନିଃଶ୍ୱାସକୁ ଶଢ଼ୀରେ ଘୋଡ଼େଇ ରଖି
ଯାକନ୍ଥୁକି ଶୋଇବାର ପୁନଶ୍ଚ ପ୍ରୟାସ
ଶେଷରେ କହିବ ଏହା ଅବାସ୍ତବ, ସବୁ ଅବାସ୍ତବ
ସ୍ୱପ୍ନ ସ୍ୱପ୍ନ ମିଛ ସବୁ, ଭୁଲ ସବୁ, ଘର ଅବାସ୍ତବ ।



# ବାଲିଘାଟ, ଆମେ ଓ ଜହ୍ନରାତି

ଆକାଶରେ ଗୋଟି ଗୋଟି ଟେମାଂରେ ତାରା
ମସୃଣ ମନରେ କେତେ ଉଦ୍ଦୀପନା, ରଂଗ ଆଉ ଜହ୍ନର ସଂଗୀତ
ବିଂଦୁ ବିଂଦୁ ହୋଇ ଏଠି ଜହ୍ନ ପଡ଼େ ଝଡ଼ି ସେତ
ଲାବଣ୍ୟର ରେଣୁ ପଡ଼େ ଝରି
ନୂନ ନୂନ ଘାସ ଦେହେ ଜମି ଅଛି ଜରିଧୂଳ
ଚକ୍ ଚକ୍ ଛିଟା ସେତ ଉଲ୍ଲାସର ନୂତନ କାଉଁରୀ ।

ପାଖେ ସବୁ ବରଗଛ ଠିକ ଠିକ ସ୍ୱପ୍ନର ଓହଳ
ଝାଉଁଗଛ ଡାଳେ ଡାଳେ ମାୟାବିନୀ ରାତିର ଇସାରା
ବାଦୁଡ଼ିର ଚିଁ ଚିଁ ନେସିଥିଏ କଳରବ ଗଛର ଛାତିରେ
ଛୁଇଁ ଛୁଇଁ ଲଟ ତଳେ ତୁମେ ଟୁଲ ହସି ହସି
ଫୁଲପଡେ ଲୋଟି ସବୁ, ଫୁଲ ପଡ଼େ ଲୋଟି ।

ପବନ ଉଡ଼ାଇ ଆଣେ ମୋ ଛାତିକୁ ତୁମର ପଣତ
ଦୁବଘାସେ ଛନ୍ଦି ଛନ୍ଦି ଯାଏ ତୁମ କୋମଳ ପାହୁଲ
ଚିହ୍ନା ଚିହ୍ନା ଢେଉ ଉଠେ ନଈର ଛାତିରେ ଆଉ ମୋହର ଛାତିରେ
ତୁମର କେଶରୁ ପଡ଼େ, ବାସ୍ନାର ଝରି, ଘାସ, ପତ୍ର, ଫୁଲ ଆଉ
ଚଳମାନ ପବନ ହାତରେ ।

ହସଆସେ ଆସ୍ତେ କରି, ଖୁବ୍ ଆସ୍ତେ ଓଠରୁ ଓହ୍ଲାଇ
ଜହ୍ନରାତି ନେଇଯାଏ କେଉଁ ଏକ ଦୂର ଜଂଗଲକୁ
ଭୁଲିଯାଏ ସବୁ ଏଠି, ବାପା, ମାଆ, ଗାଆଁ ମୋର
ଦୁଃଖ ତଳେ ଦାରୁଣ ସହର

ଜହ୍ନର ଝରଣ ଛୁଆଁ ଭେଦି ଭେଦି ଗଳିଯାଏ
ଶିରା ଆଉ ପ୍ରଶିରାର ଦୁର୍ଭେଦ୍ୟ ଜଂଗଲ ।

ଆମେ ଏଠି ଖୋଜୁଛୁଁ ଜହ୍ନ ଆଉ ତାରାର ଠିକଣା
ମାନସିଂ କବିତାରେ ସହକାର ଗୁଚ୍ଛ
ମନହୁଏ ଗଢ଼ିବାକୁ ନକ୍ଷତ୍ରକୂଳେ କେଇଗୋଟି ସପନର ଘର
ଯାହା ଆମ ରାଜପୁରୀ, ମନପୁରୀ
ଦୁଃଖ ସୁଖ ଭୁଲିବାର ସୁରମ୍ୟ ସଂସାର ।

ସୁଲୁ ସୁଲୁ ପବନରେ ନିଦ ଓ ଅଳସ ଖାଲି ଫିଟି ଫିଟି ପଡ଼େ
ଆସ ପୁଣି କ୍ଲାଂତ ହୋଇ ବସିଯିବା ସବୁଜ ଘାସରେ
ମୁଠା ମୁଠା ବାସନାର ଲହଡ଼ି ଭିତରେ
ତୁମେ ଏଠି ନିଶ୍ଚିଂତେ ପଡ଼ିବ ଶୋଇ
ଚୁପ୍ ଚୁପ୍ ମୁହଁ ରଖି ମୋହର ଗୁନ୍ତରେ ।



# ଆଖି

ପ୍ରିୟତମା, ତୁମ ଆଖି ସବୁଠୁ ସୁଦଂର
ତୃଷାର୍ତ୍ତ ବାଟୋଇ ପାଇଁ
ଝିଲମିଲ କାଚ କେଂଦୁ ପାଣିର ସକାଳ ।

ଆତୁର ଆର୍ଶିରେ ଖୋଜେ ସପନ ଦେଶର ଗଛ
କବିତାର ନୀଳନଈ, ନୀଳ ମେଘ,
ବିଶ୍ୱାସର ନୀଳ ଉପବନ
ପ୍ରିୟତମା ବଡ଼କଷ୍ଟ : ପାରହେବା ହୁତୁହୁତୁ ନଆଁ ର ମଧ୍ୟାହ୍ନ
ବଡ଼ କଷ୍ଟ : ଓଟପିଠି ବହୁଥିବା ଖରାର ଆକାଶ
ଖରାବେଳ ବଡ଼ କଷ୍ଟ, ବଡ଼ କଷ୍ଟ କଂଟାର ଦଶନ ।

ଭୁଲୁଛି ମୁଁ ପ୍ରିୟତମା
ପଛରେ ପକାଇ ଦୁଃଖ, ମରୁ ହାହାକାର
ଯେତେଥର ଦେଖିଅଛି ସେ ଆଖିକୁ
ନୁବଳ ଚଳକାପର ସେତେଥର ଲାଗିଛି ଅଧିର
ଲେଖିଛି ମନରେ ଯାହା
ଲଭିନାହିଁ ସେଥିରୁ ବ ଗୋଟିଏ ଅକ୍ଷର ।

ଇଚ୍ଛାହୁଏ, ହଜକାକୁ ଚିରଦିନ ତୁମ ଆଖିତଳେ ।
ଇଚ୍ଛାହୁଏ, ବଂଦିଟିଏ ହେବା ପାଇଁ
ତୁମ ସରୁ କଜଳ ଲାଂଜରେ
ତୁମେ ଥରେ ଚାହିଁ ଦେଲେ ମନଲାଗେ ଚପଳ ଚପଳ
ତୁମେ ଥରେ ଚାହିଁ ଦେଲେ ଦାହସାର ଶିହରଣ,

କଜଳ ଲାଗେ ଗଜଲ
ପବନ ଲାଗଇ କବା ମହୁ ମହୁ
ଝାଙ୍କ ବାସେ ଅତର **ଅତର**
ଅସମୟେ ଝରପଡ଼େ ବିଂଦୁ ବିଂଦୁ ପ୍ରୀତିର   କାକର
ଝରପଡ଼େ ପବନର ସିଲ୍କ ଫୁଲ,
ରଂଗଭରା ଢେଉ ଝଲମଲ ।

ଯୁଗ ଯୁଗ ଗୃହ୍ନିଁ ଥିବ ସେ ଆଖିକୁ
କବିଟିଏ ପାଲଟିବାଯାଏ
ଲେଖିବ କବିତାଟିଏ
ଯାହା କେହି ଲେଖିନାହିଁ
ଏହିପରି ଦୁର୍ବିସହ କରୁଣ ଜୀବନେ ।।



# କା’ କଟିସ୍ଥିତ ଦେଖି ମାଠିଆ

ଛବପକା ମାଠିଆଟେ ତା’ର କଟିରେ
ପିଠିରେ ପଡ଼ୁଛି ବେଣୀ
ଆଖିରେ ନରମ ଠାଣି
ସିଏ ଉଭା ସରୁ ସଡ଼କରେ ।

ସିଏ ପୁଣି ଆସ୍ତେ ଚଲେ ଅକଳଂକ ଆଲୁଅରେ
ଜୁନ ଚାନ ଫୁଲଟିର ନୀରବ ଗୁଇକୁ ଅବା ଫିଂଟି ଫିଂଟି
ତା’ର ଲାଜୁଆ ଭ୍ରୂରୁ ନଇଁ ନଇଁ ପଡ଼ୁଥାଏ
ଶିଶିର ଗୀତରେ ସିଏ ଅବା ମିଶିମିଶି ଯାଉଥାଏ
ସକାଳର ହଳଦିଆ ରଂଗର ଖବରେ ।

ତା’ ଦେହରେ କେଉଁ ଏକ ଅଜଣା ଗୀତର ଛଂଦ
ଅଜଣା ସୁରଭ ?
ତା ଆଖିରେ ଲଜର କଜ୍ୱଳ
ଗୋଲାପୀ ଫାଗୁଲ ତାର ମନୋହର
ଝୁବ୍ ମନୋହର
ସତେ ଅବା ପୃଥିବୀର ଅନୁପମ ଉପମାମାନଂକୁ
କରୁଅଛି ଛି, ଛି,
ତା’ କଅଁଳ ପାହୁଲାରେ, ସଡ଼କର ନୀରବତା
କବିତା ଲେଖୁଛି ।



# ହଠାତ୍ ଦିନେ ଅନୁପମା

ନ ଛୁଇଁ ଛୁଇଁଲ ଦେହ, ସୁଲୁ ସୁଲୁ ଦକ୍ଷିଣା ପବନ
ନ ଛୁଇଁ ଛୁଇଁଲ ମନ, ମାଳ ନଈ କୁଳୁ କୁଳୁ ସ୍ୱନ
ନଛୁଇଁ ଛୁଇଁଲ ଓଠ, ଚଇତର ଆତୁର ଚୁଂବନ
ନଛୁଇଁ ଛୁଇଁଲ ଆଖି, ଝିକି ଜହ୍ନ, ଝଲମଲ ତେଉର କଂପନ

ଝର୍କାରେ ପବନ ପଶି ଛୁଇଁଗଲ ଆସ୍ତେ ଆସ୍ତେ
ଅନୁପମା ଦେହର ବଖରା । ଛୁଇଁଲ ତା' ମାଳ ଶାଢ଼ୀ
ବାଇଶି ବର୍ଷର ଗୁଚ୍ଛ, ଅସ୍ତବ୍ୟସ୍ତ ବେଣୀ
ଛୁଇଁଲ ତା' ମାଳକାନି, ମାଳ ଆଖି, ମାଳ ଭୃରୁ,
ମାଳ ମାଳ ଶେଯର ସୁରଭି ।

ସେ ଗୁହାଁଲ ମୁହଁ ତୋଳି ଝରକା ପାଖରେ
ବେଣୀର ଶେଷାଂଶ ନିଜ ଆଗୁଂଠିରେ ଦକ୍ତୁ ଦକ୍ତୁ
ମୃଦୁ ମୃଦୁ ହସିଲ ଓ ଶାଢ଼ୀର କାନି ଅଂଠାରେ ଗୁରେଇ
ଗୁହାଁଲ ସେ ଆଉଥରେ ଆକାଶକୁ, ଜହ୍ନକୁ, ଫୁଲକୁ
ତା' ଆଖି ପତାତଳେ ଝଲମଲ କେତେ ଯେ ଅକୁହା କଥା
ଛୋଟ ଛୋଟ ସ୍ୱପ୍ନ ହୋଇ ଭାସି ବୁଲୁଥିଲ ।

ଆଦମ ଆଂବ ତୋଟାରେ ଝରଝର ପଡ଼ୁଥିଲ
ଜହ୍ନର ବରଷା । ଝରଝର ପଡ଼ୁଥିଲ ଟୋପି ଟୋପି
ଜହ୍ନ ଆଉ ତାରାର କବିତା
ଧୀରେ ଧୀରେ କହୁଥିଲ ରଂଗୀନ ପବନ
ବେଳେ ବେଳେ ପବନରେ ପରୀଙ୍କ ନୂପୁର ସବୁ
ଶୁଭି ଶୁଭି ଯାଉଥିଲ । ଶୁଭୁଥିଲ ଅଦିନ ସଂଗୀତଟିଏ

ଅନୁପମ ମିଠା ଓଠ, ମିଠା ଆଖି
ମିଠା ମିଠା ମହକରେ ଭିଜିଯାଉଥିଲି ।।

ଅଧା ପଢ଼ା ନଵେଲଟେ ତା' ହାତରେ
ପଲଂକ ଉପରେ ସିଏ ଆସ୍ତେ ରଖିଦେଲି ।
ଫୁଲପକା ଚକଆରେ ହାତ ରଖି, ଟ୍ରାନ୍‌ଜିଷ୍ଟର ଖୋଲୁ ଖୋଲୁ
ତା' ଗୁଡିକୁ ଆଉଜାଇ ନେଲି ଏବଂ କେଉଁ ଏକ ଲଳିତ ଗୀତରେ ସିଏ
ପୁରାପୁରି ଭିଜିଗଲି ଓ ବିଛଣାରେ ଶୋଇ ଶୋଇ ସେ ଭାବିଲି
ସୁରଭିତ ଦିନର କବିତା
ସେ ଦେଖିଲି ମନେ ମନେ ଝଲମଲ ଦୀପଶିଖା
ମନ୍ଦ ମନ୍ଦ ବାସୁଥିବା ଫୁଲର ବିଛଣା
ଅପଲକ ପୁଲକରେ ଭିଜି ଭିଜି ଜଳୁଅଛି
ଉଜାଗର ରାତିର ସଳିତା
ସେ ପିଂଧିଛି ଝିଲମିଲ ନାଳ ଶାଢ଼ୀ
ପ ପୁଲରେ ଆଂକ ଅଛି ଟିପି ଟିପି ପ୍ରୀତିଫୁଲ
ହାତରେ ପିଂଧିଛି ଶଂଖା, ନାଳକାଚ, ପାଦରେ ଅଳତା
ମଥାରେ ସିଂଦୂର ଟୋପା,
କପାଳରେ ଟୋପି ଟୋପି ଚଂଦନ କବିତା ।

ସେ ବସିଛି ସତେ ଅବା ଚୁପ୍‌ଚୁପ୍ ବାସର ଶେଯରେ
ପ୍ରୀତିର ଓଢ଼ଣୀ ତଳେ କଇଁଫୁଲ ନାଳ ଆଖି
ନଇଁ ନଇଁ ପଡ଼ୁଅଛି ଅଳସ ଶୋଷରେ ।

ଏଇମିତି କେତେ ସ୍ୱପ୍ନ, କେତେ କଥା
ସବୁ ସେହି ତା' ମୁହଁରେ ପଢ଼ୁଥିବା
ଅଲଗା ମଳୟ ସେତେ ବ୍ୟାକୁଳତା
ଫଗୁଣର କେଉ କେଉ ମିଠା ନିର୍ଜନତା



# ରୁମାଲରେ ଫୁଲ ବୁଣୁଥିବା ଝିଅଟି

ଶ୍ୟାମଳୀ ଝିଅଟି ବସି
ଫୁଲ ବୁଣୁଛି
ସପନରେ ମଳତର ଦୁଇ ଆଖି
ଝଲସି ଉଠୁଛି
ଅଗିଣର ଝଲମଲ ଅପରାହ୍ନ ଆକାଶରେ
ହାଲ୍‌କା ମେଘ ଖଂଡ଼େ
ଭସି ଭସି ଯାଉଛି ।

ଫୁଲ ବୁଣୁଛି ଝିଅଟି
ବେଳେବେଳେ ବାଳିକା ଆଖିରେ
ଡୋଳା ଡାଳ ଏଣିକି ତେଣିକି ଘୂରୁଁଛି ।

ପବନ ସଜାଡ଼ି ଦେଉଛି
ତା'ର ସିଣ ସିଣ କେଶ
ନୀଳ ଶାଢ଼ୀ, ନାଲି ବ୍ଲାଉସ୍‌ରେ
ଦେବୀ ଦେବୀ ଲାଗୁଛି ଝିଅଟି ।

ନଛ ନଛ ଭ୍ରୁଲତା
ଉତଳା ପତଳା ଆଖି

୫୭

ଚିକ୍‌କଣ ଚିବୁକ
ଅଧର ଅଧର ବାସେ ଅପରାହ୍ନ
ଫୁଲର ଆକାଶ

ପବନରେ ସୀତାରର ସ୍ୱର
ଝିଅଟିର ଆଖିତଳେ
କଳାଯାଇ ଚିହ୍ନଟିଏ
ଝଲମଲ ବାସ୍ନା ଛୋପେ
ଶୂନ୍ୟତାର ନୀରବ ଝଂକାର ।



# ମୌନ ଝର୍କା

ଏଇବାଟେ ତୁମେ ଦିନେ ଆସୁଥିଲ
ବନ୍ଧା ଜାକ ଗୋଲାପୀ ତ୍ରୁଣ୍ଡରେ
ଏଇବାଟେ ତୁମେ ଦିନେ ଯାଉଥିଲ
ରୁମାଲରେ ଝାଳ ପୋଛି
ଏଇବାଟେ ଗୁଲୁଥିଲ ମୁହଁ ପୋତି
ଅଳ୍ପ ଅଳ୍ପ ହସି ହସି
ବେଳେ ବେଳେ ଫେରି ଫେରି ଚାହୁଁଥିଲ
ଏଇ ଝର୍କାଆଡ଼େ ।

ପବନରେ ଝିରି ଝିରି ଶାଢ଼ୀର ପଣତ ତୁମ
ଉଡ଼ୁଥିଲ ସରାଗରେ
ଖରାପରି ଚକ୍‌ମିକ୍ ସୁନାଫୁଲ
ଝୁଲୁଥିଲ ତୁମରି କାନରେ
କେବେ କେବେ ରିକ୍‌ସାରୁ ଉଡ଼ୁଥିଲା
ତୁମ ଶାଢ଼ୀ ରଂଗୀନ ପଣତ
ରଂଗ ଭରା କଅଁଳ ଆଖିରେ ଥିଲ
ଝାଉଁବଣ ଉଚ୍ଛୁଳା ଢେଉର ଗୀତ
ଅସ୍ତବ୍ୟସ୍ତ ବାହୁଲତା, ମାଳବେଣୀ
ଓଠ ଆଉ ମନରେ ଚମକ,
ଏଇବାଟେ କେତେଥର ଯାଇଚ ଆସିଚ ତୁମେ
ଗଲ୍‌ବେଳେ ମୋ ହାତରୁ ଫଟୋଟିଏ, ଚିଠିଟିଏ
ବହିରେ କି ଡ଼ାଏରିରେ ଲୁଚେଇ ରଖିଚ ।

ଏଇବାଟେ କେତେ ସ୍ୱପ୍ନ, କେତେ ବାସ୍ନା
କେତେ ଖୋଜା ଖୋଜି

କେତେ ବାଦ, ଅପବାଦ, କେତେ ଲୁହ, କେତେ ଲିପି
କଳଂକର ଇତିହାସ ପଛରେ ପକାଇ
ସହରର ଏଇବାଟ ସେମିତି ପଡ଼ିଛି ଆଜି
ସତେ ଅବା କେଇ ଟୋପା ଲୁହପରି ନିଶୁନ କାହାଣୀ
ମଉଳିଚି ସେଦିନର ଅନୁରାଗ, ଅନୁଭୂତି
ଗପସପ, ଫୁଲର ମୂର୍ଚ୍ଛନା
ମଉଳିଚି ସେଦିନର ପାଦଚିହ୍ନ, ଗୋଲାପୀ ଯୁଇର ସ୍ୱପ୍ନ
ଧାଡ଼ି ଧାଡ଼ି ସବୁଜ କଳ୍ପନା
ମଉଳିଚି ମଉଭୂମି, ପବନର କୋଳାହଳ, ମନ ଅନୁଭୂତି
ସେଦିନର ରଂଗ ଓ ଅତର ସବୁ ପଛରେ ପଡ଼ିଚି କାହିଁ
ଆକାଶରୁ ମନଲେଖା ଇଂଦ୍ରଧନୁ ଯାଇଅଛି ଲିଭି
ମଉଳିଚି ହସଖୁସି, ଚଂଚଳ ସ୍ୱପ୍ନର ଦିନ
ପଛକଥା ସବୁ ଝୁରି ଝୁରି ।



# ଭଦ୍ରକ

କେମିତି କହିବ, ତୁ କିଛି ଦେଇନୁ ବୋଲି ।
ନବାବ ଓଠକୁ ଶଧ
ଗଛର ଥୁଂଟା ଡାଳକୁ ରଂଗୀନ ଚଢେଇ
ଫାଂକା ଆକାଶକୁ ତାରା ଆଉ ଜହ୍ନ
ଉପବାସୀ ମନ ପାଇଁ ସୁଂଦର ଓ ପରିଷ୍କାର ସ୍ୱପ୍ନ ।
ନଈକୁ ଚିହ୍ନିତ ବାଟ । ବସି ବସି ଗପିବାକୁ
କଳ୍ପନାର ମାଳକୁଂଜ, ରତିର ସ୍ୱପ୍ନର ଦୃଶ୍ୟ
ଅଳସୀ ପାଣିର ଚିକ୍‌ମିକ୍ ତରଙ୍ଗ ଓ
ଉଲ୍ଲସିତ ହୋଲି ଖେଳ, ଲାଜର ଅବିର

ସବୁ ଦରିଦ୍ର ସଂସାର ପାଇଁ ପ୍ରେମର ଐଶ୍ୱର୍ଯ୍ୟ ।
ବହୁ ଐଶ୍ୱର୍ଯ୍ୟରେ ପୁରି ଉଠିଲା ମୋ କାମନାର
କରୁଣ କୁଡ଼ିଆ । କେମିତି ବା ଭୁଲିଯିବ ଏତେ ଶୀଘ୍ର
ବର୍ଷା ବାଦଲର ଟୁପ୍‌ଟୁପ୍ ଗପ । ସଂଜର ନଈ ଛୁଠରେ
ଭରା କଳସୀର ଚହଲା ଅଂଧାର । ଜହ୍ନ ଜୋଛନାର ରାତି
ଓ କାଶତଂଡ଼ୀ ହସ ।

କେମିତି ଭୁଲିବ ? ଧୂପ ଧୂପ ବାସିଥିବା ସଂଜ ବେଳ,
ସାଳଂଦର ବାଲିଶେଯ, ନିର୍ଜନ ପଠାରେ ବାସନାର
ଅଦ୍‌ଭୁତ ମଉଛବ, ଛନ ଛନ ଲାଗୁଥିବା ହାତଗୋଡ଼
ମନେ ମନେ ହାତ ପାପୁଲିରେ ତୋଳିଧରି ଥିବା ଫୁଲ୍
ଯୋଜନ ଯୋଜନ ବ୍ୟାପୀ ମହ ମହ ବାସୁଥିବା
ଜୀବନର କୋଳାହଳ,

ସବୁଦିନେ ନୂଆ ନୂଆ ଦିଶୁଥିଲା
ପାଣି କାଚଜରେ ଝଲମଲ କବତାର ରଙ୍ଗ
ସେତେବେଳେ ସଂଜବେଳ ଲାଗୁଥିଲା
ବାଳିକାର ଲାଜ ଲାଜ ଆଖିପର,
ପ୍ରୀତିର ପେଥିଏ କଥା ମହଜୁଦ୍ ଥିଲା
ସ୍ୱପ୍ନର ଆଖିରେ ।
ସବୁ ଅଙ୍ଗୁରତା ଗୀତ ଗୀତ ଲାଗୁଥିଲା,
ସ୍ନେହର ସାଳଂଧ କୂଳେ ବୁଲି ବୁଲି ଗାଉଥିଲି
ବସଂତର ମଧୁର ସଂଗୀତ ।
ଜହ୍ନ ରାତି ପାରି ଦେଉଥିଲା ଗୁଂଧନୀ ଗୁଦଗ
ବେଳେ ବେଳେ ଅଧିର ପବନ ଅସ୍ପଷ୍ଟ ସ୍ୱରରେ
ଗାଉଥିଲା ଲଳିତ ଲୁଳାବୀ,
ଶୁଆଇ ଦେଉଥିଲା ମୋତେ
ସମସ୍ତର ଛବିଳ ଗୁମ୍ଫରେ ।

କେତେ ଚମତ୍କାର ସେ ଖେଳରେ ଭଦ୍ରକ !
ହସାହସି, ରୁଷାରୁଷି,
ଗୋଟେ ସବୁଜ ଘାସର ପଡ଼ିଆ ଉପରେ
ସେଠି ହସର ହୁଇସିଲ୍ ଓ ନିଶ୍ୱାସର ନରେଲା ଲହର୍
ଛିଂଗୁଡ଼ି ପଡ଼ୁଥିଲା ଟୁପ୍ ଟାପ ଫୁଲ,
ନଈ ପଠା ଲାଗୁଥିଲା ସାବ୍ଜା ଏକ
ଘାସର ପଂଜୁରୀ
କିଏ ନ ଗୁନ୍ଥେଁ ଛଂଧ ହେବାକୁ ଲତାରେ, ଫୁଲରେ
ମଂଦ ମଂଦ ପବନ ଓ ମେଘ ମଲ୍ଲାରରେ ?
ସହଯାଇଛ ସେ ସବୁ ସୁଖ ବର୍ଣ୍ଣିବାର ଦିନ
ବଡ଼ କିରେଟ ବେଳେ ଏବେ
ପଛରୁ ଭୁ, ପଛରେ ନଈ
ପଛରେ ଘର, ପଛରଂଭି ଆତ୍ମୀୟ ସ୍ୱଜନ

କେମିତି ମୁଁ ? ଅବାକ୍ ଓଠରେ ନା ଶବ୍ଦ ନା ଭାଷା
ଦୁର୍ବଳ କଂଠରେ ନା ସ୍ୱର, ନା ନିର୍ଦ୍ଧରଣ
ନା ଉତ୍ତର ନା ଉତ୍ତରଣ
ଗୋଟେ ଅସୁଖୀ ପୃଥିବୀ ଉପରେ ମୋର ସଉଦାଗର
ଗଳୁଛି ଯେ ଗଳୁଛି
ପବନର କରୁଣ ବଂଶୀ ଶୁଭୁଛି ଯେ ଶୁଭୁଛି
ଲୁହ କଣୁଛି ଓ ବକୁଛି
ଉଦ୍ଧତ ଯୁଦ୍ଧ କ୍ଷେତ୍ରରେ
ଅର୍ଜ୍ଜୁନର ବିଷାଦ ମୋତେ ଘାରୁଛି ଯେ ଘାରୁଛି

ଆଜି ସବୁ ରୁକ୍ଷ, ରୁକ୍ଷ ଲାଗେ, ଶ୍ରୀହୀନ ଶ୍ରୀହୀନ ଲାଗେ
ମୋ ପରିବେଶ । ଜୀବନ ବଂଚିବା ଭାରି କଷ୍ଟକର ଲାଗେ
ମୋ ନିରୁଦ୍ଦିଷ୍ଟ ଭବିଷ୍ୟତ ଭାସିବୁଲେ
କରୁଣ ପାଣିରେ । ସେଇ ନଈ ସେଇ ଢେଉ
ସେଇ ଜହ୍ନ, ସେଇ ରାତି, ସେଇଦିନ ସବୁ
ପରକର ସିବାଳର ଲାଗେ ।



# ଜହ୍ନ ଖୋଜୁଥିବା ଲୋକ

ବାପାଂକ ହାଡ଼ୁଆ କାଂଧରେ
ଚଇତ୍ର ପହିଲୁରେ ଜହ୍ନ
ଗଛର ଚଢ଼େଇ, ହାତ ପାଉନଥିବା ଆକାଶ
ସେଇଠୁ ନଈର ପିଠି ଓ ମାମୁଁଘର ଗାଁ ।

ଦିନେ ସନ୍ୟାସୀ ଆସିଲେ ଜଣେ
ସେତେବେଳେ ମୁଁ ରୋଗ ଯନ୍ତ୍ରଣାରେ
ମୋତେ ଦେଖି ହସିଲେ କାଂଦିଲେ
ଝୋଳଣା ପାଇଁ ହାତ ବଢ଼େଇଲି
ଓ ହଠାତ୍ ଚମକି ପଡ଼ିଲି ।
ଏକୁଟିଆ ସଜନା ଡାଳରେ
ପେଚ୍ଚର ହୁଟ୍ ହୁଟ୍ ।
ମୁଁ ରୋଗା, ଶୃଙ୍ଖଳିତ,
ମାଆର ପଣତ ଶେଯ, ମୋର ସ୍ୱପ୍ନ ।

ପଳାତକ ଈଶ୍ୱରଂକ ପାଦଚିହ୍ନ ଖୋଜି ଖୋଜି
ସନ୍ଧ୍ୟା ଟପିଗଲା
ଗୋଡ଼ହାତ ଫୋଲା ହେଲା
ନଈକୂଳେ ଠିଆ ହୋଇ ଦେଖିଲି ମୁଁ
ପାଣିର ଦର୍ପଣ ସାରା ଖରତର ତୃଷ୍ଣା
ପୃଥିବୀକୁ ଚିହ୍ନିବା ଲୋଭରେ
ଘରଟିଏ ନଈ କୂଳେ
ଘରସାରା ସୁସଜ୍ଜିତ ରୋଗ ଓ ଯନ୍ତ୍ରଣା ।

ଅାଉଦିନକର କଥା : ଆଲୋକର ପଡ଼ିଆରେ ଧାଉଁଥିଲି
ସେତେବେଳେ ଶଶକ ମୁଁ
ଶୋଷ ସବୁ ଆସ୍ତେ ଆସ୍ତେ ନଇ ନଇ ଆସୁଥିଲା
ଦୁର୍ବଳ ଆଖିରେ
ବଦାମ୍ବର ପକ୍ଷଟିଏ ଥରୁଥିଲା ରୁମାଲର ଅସ୍ଥିର ହାତରେ
ମୁଁ ଭାସୁଥିଲି ନାଟକର ତୃଷ୍ଣାପୂ ଦୃଶ୍ୟରେ
ନାଗଫେଣି କଣ୍ଟା ଉହାଡ଼ରେ
ଖସିପଡ଼ୁଥିଲା ମୋର ଫୁଲ ଶେଯ
ବଳକୁଲ ଅଚହ୍ନା ଜାଗାଟେ ପରି ଲାଗୁଥିଲା
ଘର ଘର ନିସ୍ତବ୍ଧ ନିସ୍ତବ୍ଧ ।

ଅରଣ୍ୟ ଗୁଳ୍ମରୁ ଟୋପି ଟୋପି ରକ୍ତ ଝରୁଥିଲା
ଘାର୍ଡି ବସିଥିଲା ନରୁପାଙ୍କୁ ବାଦୁଡ଼ିଟେ ପରି
ଓଟର ପିଠି ଉପରେ ଶୁନଶାନ୍ ଦିଶୁଥିଲା ନିସ୍ତବ୍ଧ ତୃଷ୍ଣା
ଦୁଃଖର ବୋଜଳା ବୋହି, ଆଂଜୁଳାଏ ଲୁହ ଧରି
ବାହୁଡ଼ିଲି ଆପଣା ଘରକୁ । ରେ ଜହ୍ନ,
ତୋ ଖାତାରେ ଅଂଧାର ପୁରୁଣା ହେଲା
ଆଉ ଜଣେ ଅର୍ଜୁନକ ଆଣିଦେଲା ସ୍ୱପ୍ନର ଐଶ୍ୱର୍ଯ୍ୟ
ଝରକା ଖୋଲି କହିଲା : ଦେଖ ଦେଖ ମାଳରଂଗ କୁହୁଡ଼ିର ରାତି
କେତେ ରାତି, କେତେ ଜହ୍ନ, କେତେ ଯେ ଆକାଶ ଏଠି
ଦେଖୁଚତ, ଦେଖୁ ଦେଖୁ ଶୋଇପଡ଼ ମୋ କୋଳରେ
ଫାରହିଏ କେଶର ଶେଯଟେ
ଏଇମିତି କେତେ ଦିନ,
ପାଣିସୁଅପରି ସବୁ ବୋହିଗଲା
ଜାଣିପାରିଲିନି ।

ଆଉଦିନେ : ମରୁଭୂଇଁଟିରେ
ଶୋଇଥିବା ବାଂପାଙ୍କ ପାଖରେ

ଜଗୁଆଳି ମୁଁ । ରାତିସାରା ଅନିଦ୍ରା ଆଖିରେ
ଦିଶିଯାଉଥିଲା ଏକ ବିକଳାଂଗ ପକ୍ଷୀର ଆକୃତି
କର୍କଶ ବେଗରେ ଜୁଡ଼ୁ ବୁଡ଼ୁ ପୂଜ ଓ ରକ୍ତରେ
ସେଦିନର ଜହ୍ନ ବୁଡ଼ିଗଲା
ମାତ୍ର ଛ ଖଂଡ଼ କାଠରେ ତିଆରି
ମୋ ବାପାଂକ କୋକେଇ ଉପରେ
ଅନବର୍ତ ଲୁହ ସବୁ ଫୁଲ ହୋଇ ଝରୁଥିଲା
ବିଧବା ମାର ଚୂଡ଼ି ଦରସାର ଭାଂଗି ପଡ଼ୁଥିଲା ।

ଏହିପରି ପଛରେ ପଡ଼ିଲା କେତେ ଜହ୍ନରାତି,
ଅଂଧାର ସଡ଼କ
ଆଜ ମୁଁ ଖୋଜୁଚି ତୋତେ
ଖାସ୍ ତୋତେଇରେ ଜହ୍ନ
ମୋ ପୁଅର ଟିକି ଆଖି ନିଷ୍ପାପ ଓଠରେ ।
ସଭିଏଁ କହନ୍ତି ଭାଇ, ଜଗତ ହୋଇଛି ବଂଧା
ଏହିପରି ସୁଖ ଓ ଦୁଃଖରେ ।



ଗୀତ ଓ କବିତା ଭିତରେ ଏକ ବ୍ୟବଧାନ ରହିଛି ।
ସେହି କେବଳ ଛନ୍ଦର ନୁହେଁ, ଶବ୍ଦ ଯୋଜନାର ନୁହେଁ,
ବରଂ ଆବେଗର; ପ୍ରାଣ ପ୍ରାଚୁର୍ଯ୍ୟର, ଅନ୍ତର୍ଦୃଷ୍ଟିର ।
ଏଇ ସବୁ ଭାବାବେଗ ଭାବାଣ୍ଟ ଅବସ୍ଥାନରେ ପହଞ୍ଚିଲେ ଗୀତ
ଆବେଗ ବିଲୀନ ହୁଏ ନାହିଁ । ହୋଇପାରେ ନାହିଁ ।
ଅମ୍ଭର କଥା, ପ୍ରାଣର ବାର୍ତ୍ତାକୁ ତାଳ, ଗତି, ଛନ୍ଦରେ
ବାନ୍ଧିବାକୁ ଚେଷ୍ଟାକରି, ଆକାର କରିବାକୁ ପ୍ରୟାସ
କରି କବି ନିଜକୁ ଚିହ୍ନିତ କରିଥାଏ । ଆଉ ଚିହ୍ନାଏ ଯେଉଁ
ଶବ୍ଦ କବି ପ୍ରିୟାକୁ··ଅଟେଣି ସେମାନଙ୍କର ନାମର
ତାଲିକା, କିନ୍ତୁ ନାମ ଅପେକ୍ଷା ଭାବ ହିଁ ଧରାଦିଏ ଅଧିକ
ପାଠକ ବା ଶ୍ରୋତା ନିକଟରେ । ଗୁନ୍‌ଗୁନ୍ ସ୍ୱରରେ
ଆବୃତ୍ତି କରିବାକୁ ମନେ ହୁଏ ବାରମ୍ବାର । କବି ପ୍ରିୟାର
ସାନ୍ନିଧ୍ୟରେ, କିମ୍ବା ଅନୁପସ୍ଥିତିରେ । ଭାବ ହୁଏ
ତରଙ୍ଗାୟିତ । କବିତା ହୁଏ—ପ୍ରେୟ, ବ୍ୟବଧାନ ଲୁଚିଯାଏ,
ଗତ ରୋଧ କ୍ଷୋଭ ନିଶ୍ଚିହ୍ନ ହୋଇଯାଏ । ମିଳନ
ବାରମ୍ବାର ମନେ ପଡ଼ିଯାଏ—ପୁନର୍ମିଳନର ଆକାଂକ୍ଷାରେ,
ଆବେଗର ବା ପୂର୍ଣ୍ଣ ମୁହୂର୍ତ୍ତର ଜୀବନ୍ତ ସାନ୍ନିଧ୍ୟରେ ।
କବି ହୃଦାନନ୍ଦ ପାଣିଗ୍ରାହୀ ଧରି ରଖିବାକୁ
ଚାହିଁଛନ୍ତି ସେହି ମୁହୂର୍ତ୍ତଗୁଡ଼ିକୁ-ଅକ୍ଷରରେ, ଶବ୍ଦରେ, ଧ୍ୱନିରେ
ପୁଣି ଭାବାବେଗର ସ୍ଫୁରଣରେ । ତେଣୁ ଏଗୁଡ଼ିକ
ଧରାବନ୍ଧା ଛନ୍ଦର କବିତା ନୁହେଁ—ଏଗୁଡ଼ିକ ଯଥାର୍ଥରେ ଗୀତ ।
ସେ ଗାଇଛନ୍ତି, ଗାଉଛନ୍ତି—ଆଉ ମନେହୁଏ ଗାଇ
ଚାଲିବେ ଅନନ୍ତ କାଳର ଅବଧି ପର୍ଯ୍ୟନ୍ତ—ତାହାହିଁ ଅନନ୍ତ
ପ୍ରେମର ଗୀତ । ହୃଦୟର ଏହାହିଁ ରହିଥାଏ—
କେବଳ ବ୍ୟକ୍ତିମାନସକୁ ଚିହ୍ନିତ କରିବା ଭିତରେ, କବି
ପ୍ରିୟାକୁ ଅସତର୍କ ମୁହୂର୍ତ୍ତରେ ଆବେଦନ କରିବା
ଭିତରେ ଏ କବିତାଗୁଡ଼ିକ ଅନବଦ୍ୟ ଆଲେଖ୍ୟ !